# ପାଠ୍ୟଶସ୍ତ୍ର

## ୫ମ ଶ୍ରେଣୀ

ପ୍ରକାଶକ:—

ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡ଼େରେସନ

# ପାଠ୍ୟ-ଷସଡା

( ସ୍ମିପ୍ )

( ପଞ୍ଚମ ଶ୍ରେଣୀ ନମନ୍ତେ )

ପ୍ରକାଶକ:—

ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡ଼େରେସନ ।

ମୂଲ୍ୟ— ଟ ୧.୨୫ ( ଏକଟଙ୍କା ପଚଶପଇସା ମାତ୍ର )

# ମୁଖବନ୍ଧ

କେଉଁ ଶ୍ରେଣୀର ପିଲାମାନଙ୍କୁ ବର୍ଷ ମଧ୍ୟରେ କେଉଁ କେଉଁ ବିଷୟ ପଢାଇବାକୁ ହେବ, ତାହା ସିଲାବସ୍‌ରେ ନିର୍ଦ୍ଦିଷ୍ଟ କରାଯାଇଥାଏ ।

କୌଣସି ଏକ ଗୁରୁତର କାର୍ଯ୍ୟାରମ୍ଭ ପୂର୍ବରୁ ଉକ୍ତ କାର୍ଯ୍ୟ କିପରି ଭାବରେ ସମାହିତ ହେବ, ସେ ବିଷୟରେ ଏକ ଯୋଜନା ବା ପ୍ରକଳ୍ପ ପ୍ରସ୍ତୁତ କରାଯାଇଥାଏ । ଯୋଜନା ବିହୀନ କାର୍ଯ୍ୟ ଲଗାମ-ବିହୀନ ଅଶ୍ୱାରୋହୀର ଅବସ୍ଥା ସହିତ ସମାନ । ଆମର ଶିକ୍ଷକ ବନ୍ଧୁମାନେ ଅଧ୍ୟାପନାରୂପ ଯେଉଁ ଗୁରୁ ଦାୟିତ୍ୱ ଗ୍ରହଣ କରିଛନ୍ତି, ତାହାକୁ ଯଥାଶୀଘ୍ର ସମ୍ପାଦନ କରିବାପାଇଁ ଯେଉଁ ପ୍ରାକ୍-କଳନ ବା ପ୍ରାକ୍ ପ୍ରସ୍ତୁତି ଆବଶ୍ୟକ ହୋଇଥାଏ, ତାହାର ନାମ ପାଠ୍ୟ-ଖସଡ଼ା ବା " ସ୍କିମ୍ " ।

"ସିଲାବସ୍" ନିର୍ଦ୍ଦିଷ୍ଟ ବିଷୟ ଗୁଡ଼ିକ ମଧ୍ୟରୁ କେଉଁ ମାସରେ କେଉଁ କେଉଁ ବିଷୟ ପଢାଇବାକୁ ହେବ, ଏହା 'ସ୍କିମ୍' ବା ପାଠ୍ୟଖସଡ଼ାର ପ୍ରଧାନ ବିଷୟବସ୍ତୁ । ଉପଯୁକ୍ତ ବିଚାର ସହିତ ପ୍ରସ୍ତୁତ ହୋଇଥିବା 'ପାଠ୍ୟଖସଡ଼ା' ଆମ୍ଭମାନଙ୍କର ପରମବନ୍ଧୁ । ଏହା ଏକ ଜାଗ୍ରତ-ପ୍ରହରୀର କାର୍ଯ୍ୟକରେ ଏବଂ କେଉଁ ଦିନ କେଉଁ ବିଷୟରୁ କେତେ ଅଂଶ ପଢାଇବାକୁ ହେବ, ତାହା ସ୍ମରଣ କରାଇ ଶିକ୍ଷାଦାନର ଗତିକୁ ନିୟନ୍ତ୍ରିତ କରେ । ସ୍କିମ୍ ବିଦ୍ୟାଳୟର ଏକ ମୂଲ୍ୟବାନ ବିଭବ । ଅନେକେ 'ସ୍କିମ୍'ର ଆବଶ୍ୟକତା ଓ ଉପାଦେୟତାକୁ ଅସ୍ୱୀକାର କରିଥାନ୍ତି, ମାତ୍ର ଉପଯୁକ୍ତ ପ୍ରଣାଳୀରେ ପାଠ୍ୟ-ଖସଡ଼ା ପ୍ରସ୍ତୁତ କରି ତାହାକୁ ନିୟମିତ ଅନୁସରଣ କଲେ ଆଶାତୀତ ସୁଫଳ ଲାଭ ହୋଇଥାଏ ।

ବିଦ୍ୟାଳୟ କର୍ତ୍ତୃପକ୍ଷ 'ସ୍କିମ୍' ବା ପାଠ୍ୟଯୋଜନା ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥାନ୍ତି । ଅନେକ ଚିନ୍ତାଶୀଳ କୃତୀ ଶିକ୍ଷକ ପିଲାମାନଙ୍କର ଧାରଣା ଓ ବୋଧଶକ୍ତି ପ୍ରତି ଲକ୍ଷ୍ୟରଖି ସୁଚିନ୍ତିତ ପାଠ୍ୟଖସଡ଼ା ପ୍ରସ୍ତୁତ କରିବାର ଦେଖାଯାଏ ମାତ୍ର ଅଧିକାଂଶ ବିଦ୍ୟାଳୟର ପରିଦର୍ଶନ ମନ୍ତବ୍ୟ ଅନୁଧ୍ୟାନ କଲେ କିମ୍ବା ପରିଦର୍ଶକ କର୍ମଚାରୀଙ୍କ ସହିତ ଆଲୋଚନା କଲେ ଜଣାଯାଏ ଯେ, ଶିକ୍ଷକମାନେ ପାଠ୍ୟଖସଡ଼ା ପ୍ରସ୍ତୁତ କରିବାରେ ଉଦାସୀନ ହିଁ ରହିଥାନ୍ତି । ଶିକ୍ଷକମାନଙ୍କ ପକ୍ଷରେ ସ୍କିମ୍ ପ୍ରସ୍ତୁତ କରିବା ଆଦୌ ଦୁରୂହ ବ୍ୟାପାର ନୁହେଁ । ତଥାପି ଏ ପ୍ରକାର ମନ୍ତବ୍ୟ ବାରମ୍ବାର ଶୁଣାଯାଇଥାଏ । ସର୍କଲ କିମ୍ବା ଜିଲ୍ଲା ସ୍ତରରେ ଅଭିଜ୍ଞ ଶିକ୍ଷକ, ସ. ଇ. ଓ. ଡି. ଆଇ.ଙ୍କ ତତ୍ତ୍ୱାବଧାନରେ ଏକ ସର୍ବସମ୍ମତ ସ୍କିମ କରାଯାଉଥିଲେ ବହୁ ସମସ୍ୟାର ସମାଧାନ କରାଯାଇ ପାରୁଥାଆନ୍ତା, ମାତ୍ର ସେପରି ବ୍ୟବସ୍ଥା ଏ ପର୍ଯ୍ୟନ୍ତ ହୋଇ ନଥିବାରୁ ବହୁ ମୁନିଙ୍କର ବହୁ ମତକୁ ହଜମ କରି ନ ପାରି ଅନେକ ସ୍ଥଳରେ ଶିକ୍ଷକ ଉଦାସୀନତା ପ୍ରକାଶ କରିବାକୁ ବାଧ୍ୟ ହୋଇଥାନ୍ତି କିମ୍ବା କର୍ତ୍ତୃପକ୍ଷଙ୍କୁ ଦେଖାଇବାପାଇଁ ଯାହା ତାହା କରି ଖଣ୍ଡିଏ ସ୍କିମ୍ ପକାଇ ରଖିଥାନ୍ତି, ଯହିଁରେ ଆନ୍ତରିକତା ପ୍ରାୟ ନ ଥାଏ ।

ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡ଼େରେସନ ସମଗ୍ର ଓଡ଼ିଶାର ୫୦ ହଜାର ଶିକ୍ଷକଙ୍କର ଏକ ପ୍ରତିନିଧିମୂଳକ ଅନୁଷ୍ଠାନ । ଶିକ୍ଷକମାନଙ୍କ ବିଭିନ୍ନ ବୃତ୍ତି ସମ୍ପର୍କୀୟ ଅଭିଯୋଗ ମଧ୍ୟରୁ ବିଧିବଦ୍ଧ ପାଠ୍ୟଖସଡ଼ା ନ କରିବା ଗୋଟିଏ ପ୍ରଧାନ ଅଭିଯୋଗରୂପେ ଫେଡେରେସନର କର୍ମକର୍ତ୍ତାଙ୍କ ଦୃଷ୍ଟିକୁ ଅଣାଯାଇଥାଏ । ପ୍ରାଥମିକ ବିଦ୍ୟାଳୟରେ ସ୍କିମ୍‌ର ଆବଶ୍ୟକତା କିପରି ଅପରିହାର୍ଯ୍ୟ ତାହା ଫେଡ଼େରେସନ ମର୍ମେ ମର୍ମେ ଅନୁଭବ କରିଛନ୍ତି ଓ ଏହାର ଅଭାବ ଅଧ୍ୟାପନାରେ କିପରି ଅନ୍ତରାୟ ସୃଷ୍ଟି କରେ ତାହା ମଧ୍ୟ ଉପଲବ୍ଧି କରି ଅଛନ୍ତି । ବହୁ ଚିନ୍ତା ପରେ ଏକ ସୁଚିନ୍ତିତ ପାଠ୍ୟଖସଡ଼ା ପ୍ରସ୍ତୁତ କରିବା ପାଇଁ ଫେଡ଼େରେସନର କର୍ମକର୍ତ୍ତାମାନେ ସ୍ଥିର କଲେ । ଏ ସମ୍ପର୍କରେ କେତେକ ବିଶିଷ୍ଟ ଶିକ୍ଷା ବିଭାଗୀୟ କର୍ମକର୍ତ୍ତାଙ୍କ ପରାମର୍ଶ କ୍ରମେ, କେତେକ ସ୍କୁଲ ସ. ଇ. ଓ ବହୁ ଅଭିଜ୍ଞ ଶିକ୍ଷକଙ୍କୁ ନେଇ ଏକ ପାଠ୍ୟଯୋଜନା ପ୍ରଣୟନ କରାଗଲା । ଏହି ସ୍କିମକୁ ତନ୍ନ ତନ୍ନ କରି ପରୀକ୍ଷା କରିବା ପାଇଁ ପ୍ରାଥମିକ ଶିକ୍ଷାର ଗବେଷଣା ଦାୟିତ୍ୱରେ ଥିବା " ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ " ( State

Insitute of Education ର ଅଧକ୍ଷ ତଥା ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀଯୁକ୍ତ ଚେନ୍ନ ନାଥଙ୍କୁ ଅନୁରୋଧ କରାଗଲା । ସେ ମହାଶୟ ଆମ୍ଭମାନଙ୍କର ଏତାଦୃଶ୍ୟ ଉଦ୍ୟମକୁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ ଆମ ଡ୍ରାଫ୍ଟ କପିଟିକୁ ଆମୂଳାନ୍ତ ପାଠ କରି ବହୁ ସୁଚିନ୍ତିତ ପରାମର୍ଶ ଦେଲେ ଏବଂ ରାଜ୍ୟଶିକ୍ଷା ପ୍ରତିଷ୍ଠାନର ଅଧ୍ୟାପକ ଶ୍ରୀଯୁକ୍ତ ଜଗନ୍ନାଥ ମହାନ୍ତିଙ୍କର ବିଶେଷ ସହଯୋଗରେ ଏହି ସ୍କିମ୍ ପ୍ରସ୍ତୁତ କରାଗଲା ।

ଏହି ସ୍କିମ୍‌ରେ ବିଭିନ୍ନ ସାହିତ୍ୟ ବହିରେ ଥିବା ବିଷୟ ଗୁଡ଼ିକ ମଧ୍ୟରୁ କେତେକ ବିଷୟକୁ ଆଗପଛ କରି ଶିକ୍ଷା ଦିଆଯିବାର ବ୍ୟବସ୍ଥା କରାଯାଇଛି । ଯେଉଁ ସମୟରେ ଯେଉଁ ବିଷୟ ଶିକ୍ଷା ଦେଲେ ତାହା ଛାତ୍ରମାନଙ୍କର ମନକୁ ସ୍ପର୍ଶ କରିବ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖା ଯାଇଛି । ଉଦାହରଣ ସ୍ୱରୂପ ବର୍ଷା ପଦ୍ୟ, 'କାଗଜ ଡଙ୍ଗା ଭସିଯାଆ' ଆଦି କବିତାକୁ ଜୁନ୍ ମାସରେ ଶିକ୍ଷା ନ ଦେଇ ଜୁଲାଇ ଶେଷ କିମ୍ବା ଅଗଷ୍ଟ ମାସ ଆରମ୍ଭରେ ଶିକ୍ଷା ଦେଲେ ପିଲାମାନେ ଉକ୍ତ ପାଠମାନଙ୍କରେ ଅଧିକ ଆଗ୍ରହୀ ହେବେ ଓ ଶିକ୍ଷାଦାନ ବାସ୍ତବ ହୋଇ ପାରିବ । ଏହି ମନୋବିଜ୍ଞାନ ସମ୍ମତ ପ୍ରଣାଳୀକୁ ଏହି ସ୍କିମ୍‌ର ମୌଳିକତା ପ୍ରତିପାଦନ କରୁଅଛି ।

ସ୍କିମ୍ ଆରମ୍ଭରେ ପ୍ରତି ବିଷୟର ଶିକ୍ଷାଦାନ ସମ୍ପର୍କୀୟ କେତେକ ସୁଚିନ୍ତିତ ସୂଚନା ପ୍ରଦତ୍ତ ହୋଇ ଅଛି । ସୂଚନା ଉକ୍ତ ଶିକ୍ଷାଦାନ ସମ୍ପର୍କୀୟ ଅନେକ କଥା ଶିକ୍ଷକ ବନ୍ଧୁମାନଙ୍କୁ ସ୍ମରଣ କରାଇ ଦେବ ଏଥିରେ ସନ୍ଦେହ ନାହିଁ । ଏହା ଏହି ପାଠ୍ୟ ଖସଡ଼ାର ଏକ ବୈଶିଷ୍ଟ୍ୟ ।

ପ୍ରତି ଶ୍ରେଣୀ ପାଇଁ ସ୍ୱତନ୍ତ୍ର ରୁଟିନ୍ ବା ପାଠ୍ୟ ନିର୍ଘଣ୍ଟ ସ୍କିମ୍ ସହିତ ସଂଯୋଗ କରାଯାଇଛି । ରୁଟିନ୍‌ରେ କେଉଁ ବିଷୟ କେତେ ପିରିଅଡ୍ ପଢ଼ାଯିବ, ତାହା ଉଲ୍ଲେଖ ରହିବା ସଙ୍ଗେ ସଙ୍ଗେ କମ ବେଶୀ କରାଯାଇଥିବା ପିରିଅଡ୍‌ର କାରଣ ମଧ୍ୟ ନିର୍ଦ୍ଦେଶ କରାଯାଇଛି ।

ଫେଡେରେସନ ଆପଣମାନଙ୍କର ଜାତୀୟ ଅନୁଷ୍ଠାନ । ପ୍ରାଥମିକ ଶିକ୍ଷକମାନେ ଏହି ଅନୁଷ୍ଠାନର ପୃଷ୍ଠପୋଷକ । ଫେଡେରେସନ ସହିତ ଶିକ୍ଷକମାନଙ୍କର ଓ ଶିକ୍ଷକମାନଙ୍କ ସହିତ ଫେଡେରେସନର ସମ୍ପର୍କ ଓତଃପ୍ରୋତ ଭାବରେ ଜଡ଼ିତ । ଆପଣମାନଙ୍କର ସଦିଚ୍ଛା, ଆନ୍ତରିକତା ଓ ନିଷ୍ଠା ଏହି ଅନୁଷ୍ଠାନର ପ୍ରାଣପ୍ରତିଷ୍ଠା କରିଛି ।

ଏଣୁ ଅନୁରୋଧ, ବିନା ଦ୍ୱିଧାରେ ଫେଡେରେସନ ପ୍ରକାଶିତ ଏହି ସ୍କିମ୍ ପୁସ୍ତକ "ପ୍ରତ୍ୟେକ ବିଦ୍ୟାଳୟରେ ପ୍ରଚଳନ ପାଇଁ ବ୍ୟବସ୍ଥା କରନ୍ତୁ । ସବୁ ଶ୍ରେଣୀ ପାଇଁ ଗୋଟିଏ ସ୍କିମ୍ ନ କରି ଶ୍ରେଣୀ ଶିକ୍ଷାଦାନର ସୁବିଧା ଦୃଷ୍ଟିରୁ ପ୍ରତି ଶ୍ରେଣୀ ପାଇଁ ସ୍ୱତନ୍ତ୍ର ସ୍କିମ୍ ପୁସ୍ତକ ପ୍ରସ୍ତୁତ କରାଯାଇଅଛି । ପୁସ୍ତକ ଜାତୀୟକରଣ କରାଯିବା ଫଳରେ ସ୍କିମ୍ ବଦଳିବାର ଆଶଙ୍କା ଆଉ ନାହିଁ । ତେଣୁ ଏହି ସ୍କିମ୍ ବର୍ଷ ବର୍ଷ ଧରି ପ୍ରଚଳିତ ହେବାରେ କୌଣସି ଅନ୍ତରାୟ ସୃଷ୍ଟି ହେବ ନାହିଁ ।

ସ୍କିମ୍ ସମ୍ପର୍କରେ ଯେଉଁ ବନ୍ଧୁଙ୍କର ସନ୍ଦେହ ଆସିବ, ସେ ନିଃସଙ୍କୋଚରେ ସନ୍ଦେହ ମୋଚନ ପାଇଁ ପତ୍ରାଳାପ କରିବାକୁ କୁଣ୍ଠିତ ହେବେ ନାହିଁ । ସାଧ୍ୟମତେ ସନ୍ଦେହ ମୋଚନ କରାଯିବ ।

ଆଶା, ଆପଣମାନଙ୍କ ସଦିଚ୍ଛା ସହାନୁଭୂତି ଲାଭକଲେ ଏହି ଉଦ୍ୟମ ଅଗ୍ରଗତି କରିବ ।

କର୍ମବୃନ୍ଦ



## ସୂଚୀପତ୍ର





# ପାଠ୍ୟ ନିର୍ଘଣ୍ଟ

| କ୍ରମିକ ନମ୍ବର | ବାରର ନାମ | ଛୁଟି ୩୦ | ପ୍ରଥମ ପିରିୟଡ୍ | ଦ୍ୱିତୀୟ ପିରିୟଡ୍ | ଛୁଟି ୧୦ | ତୃତୀୟ ପିରିୟଡ୍ | ଚତୁର୍ଥ ପିରିୟଡ୍ | ଛୁଟି ୨ | ପଞ୍ଚମ ପିରିୟଡ୍ | ଷଷ୍ଠ ପିରିୟଡ୍ | ସପ୍ତମ ପିରିୟଡ୍ |
|---|---|---|---|---|---|---|---|---|---|---|---|
| | | | ୪୦ ମିନିଟ୍ | ୪୦ ମିନିଟ୍ | | ୩୦ ମିନିଟ୍ | ୩୦ ମିନିଟ୍ | | ୪୦ ମିନିଟ୍ | ୪୦ ମିନିଟ୍ | ୪୦ ମିନିଟ୍ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ | ୧୧ | ୧୨ |
| ୧ | ସୋମ | ସମୂହ ପ୍ରାର୍ଥନା, ଉପସ୍ଥାନ ଗ୍ରହଣ, ପରିଚ୍ଛନ୍ନତା ଓ ଡ୍ରିଲ | ସାହିତ୍ୟ | ଗଣିତ | ଛୁଟି | କଳା ଓ ହସ୍ତଶିଳ୍ପ ଚିତ୍ରାଙ୍କନ | ରଚନା ସଂଶୋଧନ | ଛୁଟି | ଇଂରାଜୀ | ସାମାଜିକ ବିଜ୍ଞାନ [ଇତିହାସ] | କଳା ଓ ହସ୍ତଶିଳ୍ପ ଉଦ୍ୟାନ କର୍ମ |
| ୨ | ମଙ୍ଗଳ | | ଗଣିତ | ସାହିତ୍ୟ | | କଳା ଓ ହସ୍ତଶିଳ୍ପ ସରଳ କଳକବ୍ଜା | ଗଣିତ | | ରଚନା | ସାମାଜିକବିଜ୍ଞାନ [ଭୂଗୋଳ] | ଶ୍ରୁତଲିଖନ<br>ପୁସ୍ତକାକ୍ଷର ଚର୍ଚ୍ଚା |
| ୩ | ବୁଧ | | ସାହିତ୍ୟ | ଗଣିତ | | ସାଧାରଣ ବିଜ୍ଞାନ | ଗଣିତ | | ଇଂରାଜୀ | ରଚନା | କଳା ଓ ହସ୍ତଶିଳ୍ପ ଚିତ୍ରାଙ୍କନ |
| ୪ | ଗୁରୁ | | ଗଣିତ | ସାହିତ୍ୟ | | ଇଂରାଜୀ | ଗଣିତ | | ଇଂରାଜୀ | ସାମାଜିକବିଜ୍ଞାନ [ଇତିହାସ] | ବ୍ୟାକରଣ |
| ୫ | ଶୁକ୍ର | | ସାହିତ୍ୟ | ଗଣିତ | | ପଦ୍ୟାବୃତ୍ତି ଓ ସମ୍ବାଦପତ୍ର ପାଠ | ଗଣିତ | | ଇଂରାଜୀ | ସାମାଜିକବିଜ୍ଞାନ [ଭୂଗୋଳ] | ସମୂହ ଗାନ |
| ୬ | ଶନି | | ଗଣିତ | ସାହିତ୍ୟ | | ବାଳସଭା [ବକ୍ତୃତା, ପଦ୍ୟାନ୍ତ, ଅଭିନୟ ଆଦି ଶିକ୍ଷଣୀୟ କାର୍ଯ୍ୟକ୍ରମ] | | | ଇଂରାଜୀ | ସାଧାରଣ ବିଜ୍ଞାନ | କଳା ଓ ହସ୍ତଶିଳ୍ପ ଉଦ୍ୟାନ କର୍ମ |

## ସପ୍ତାହରେ ପିରିୟଡ଼ ସଂଖ୍ୟା :—

| | | | | | |
|---|---|---|---|---|---|
| ପଠନ | —୬ | ଇଂରାଜୀ | —୬ | ଖେଳ | —୧ |
| ପଠନ ସମ୍ବନ୍ଧୀୟ | —୬ | ସାମାଜିକ ବିଜ୍ଞାନ | —୪ | ବାଳ ସଭା | — ୨ |
| ଗଣିତ | —୧୦ | ସାଧାରଣ ବିଜ୍ଞାନ | — ୨ | କଳା ହସ୍ତଶିଳ୍ପ | — ୫ |
| | | | | **ମୋଟ** | **—୪୨ ପାଠ** |

ସୂଚନା ୧ । ସିଲବସ୍‌ରେ ଏ ଶ୍ରେଣୀ ନିମନ୍ତେ ସପ୍ତାହରେ ୩୭ଟି ପିରିୟଡ଼ ପାଇଁ ବ୍ୟବସ୍ଥା ଅଛି କିନ୍ତୁ ଶନିବାର ପୂର୍ଣ୍ଣ କାର୍ଯ୍ୟ ଦିବସ ହେତୁ ଇଂରେଜୀରେ ୨ଟି, ସାମାଜିକ ବିଜ୍ଞାନରେ ଗୋଟିଏ ବାଳସଭା ପାଇଁ ଦୁଇଟି ଏପରି ପାଞ୍ଚଗୋଟି ପିରିଅଡ଼ ଅଧିକ କରିବାରୁ ପିରିଅଡ଼ ସଂଖ୍ୟା ୪୨ଟି ହୋଇଅଛି ।

୨ । ଗଣିତ ୧୦ ପିରିୟଡ଼ରୁ ୬ ପିରିୟଡ଼ ବହି ପ୍ରଶ୍ନରେ ବ୍ୟୟିତ ହେବ । ଆଉ ୪ଟି ସଂଖ୍ୟା ଲିଖନ ମାନସାଙ୍କ ଓ ସରଳ ଗଣିତରେ ବ୍ୟୟିତ ହେବ ।

୩ । ପଦ୍ୟାବୃତ୍ତି ଓ ସମ୍ବାଦପତ୍ର ପାଠ ଏକତ୍ର ଗୋଟିଏ ପାଠ । ଏଣୁ ଗୋଟିଏ ସପ୍ତାହରେ ପଦ୍ୟ ଓ ଗୋଟିଏ ସପ୍ତାହରେ ସମ୍ବାଦପତ୍ର ପାଠ କରାଯିବ । ସ୍କିମ୍‌ରେ ଏତଦନୁଯାୟୀ ପାଠକ୍ରମର ସୂଚନା ଦିଆଯାଇଅଛି ।



# ପାଠ୍ୟ ଖସଡ଼ା ବା ସ୍କିମ୍



## ପଞ୍ଚମ-ଶ୍ରେଣୀ

### ( ମା ତୃ ଭା ଷା )

### ( ପ ଠ ନ )

ମୋଟ ସପ୍ତାହ ସଂଖ୍ୟା—୩୭

| ଯଥା: — | | | |
|---|---|---|---|
| ଜୁନ୍‌ରେ— | ୧ | ଡିସେମ୍ବରରେ— | ୩ |
| ଜୁଲାଇରେ— | ୪ | ଜାନୁଆରୀରେ— | ୪ |
| ଅଗଷ୍ଟରେ— | ୪ | ଫେବ୍ରୁୟାରୀରେ— | ୪ |
| ସେପ୍ଟେମ୍ବରରେ— | ୪ | ମାର୍ଚ୍ଚରେ— | ୩ |
| ଅକ୍ଟୋବରରେ— | ୩ | ଅପ୍ରେଲରେ— | ୩ |
| ନଭେମ୍ବରରେ— | ୪ | | |

ମୋଟ ୩୭ ସପ୍ତାହ ।

ସପ୍ତାହରେ ୬ ପାଠ, ୩୭ ସପ୍ତାହରେ ୨୨୨ ପାଠ ।

ସାଧାରଣ ପରୀକ୍ଷା ଅପ୍ରେଲ ଶେଷ ସପ୍ତାହରେ ହେଉଥିବା'ରୁ ଏ ଶ୍ରେଣୀରେ ୩ ସପ୍ତାହ କମ୍ କରାଯାଇଛି ।



## ସାହିତ୍ୟ ସମ୍ବନ୍ଧରେ କେତେକ ଜ୍ଞାତବ୍ୟ ବିଷୟ :—

୧ । ସାହିତ୍ୟରୁ ସାଧାରଣ ଜ୍ଞାନ ସଂଗ୍ରହ କରି ନୋଟ୍ ପ୍ରଦାନ ପାଇଁ ଶିକ୍ଷକ ଦୃଷ୍ଟି ଦେଉଥିବେ । ଅନୁଚ୍ଛେଦ ଆଲୋଚନା ସମୟରେ କଠିନ ଶବ୍ଦର ଅର୍ଥ, କେତେକ ପ୍ରତିଶବ୍ଦ, ବିପରୀତ ଅର୍ଥ ବୋଧକ ଶବ୍ଦର ନୋଟ୍ ମଧ୍ୟ ପ୍ରଦାନ କରିବେ ।

୨ । ଶିକ୍ଷକ ବହୁଳ ପ୍ରଶ୍ନ ପଚାରି ଛାତ୍ରମାନଙ୍କଠାରୁ ଯଥାର୍ଥ ଉତ୍ତର ଆଦାୟ କରିବାକୁ ଚେଷ୍ଟା କରିବେ ।

୩ । ବଡ଼ ବଡ଼ ବିଷୟ ଗୁଡ଼ିକର ଆଦର୍ଶ ପଠନ ଓ ସାର କଥନ ଗୋଟିଏ ପାଠରେ ସରିବା ସମ୍ଭବପର ନ ହେଲେ ସେପରି ବିଷୟକୁ ଦୁଇଟି ଭାଗ କରି ଦୁଇଟି ପାଠରେ ଶେଷ କରିବେ । ବଡ଼ ବିଷୟ ଗୁଡ଼ିକୁ କିପରି ଭାଗ କରି ପ୍ରତି ପାଠର କେଉଁଠାରୁ କେଉଁ ପର୍ଯ୍ୟନ୍ତ ପଢ଼ାଯିବ, ତାହା ବନ୍ଟନୀ ମଧ୍ୟରେ ସୂଚିତ ଦିଆଯାଇଛି ।

୪ । ଅଭିନୀତ ହୋଇ ପାରୁଥିବା ବିଷୟ ଗୁଡ଼ିକର ଆଦର୍ଶ ପଠନ ବେଳେ ଯାହା ଭୁଣ୍ଡରେ ଯେଉଁ କଥା ଯେପରି କୁହାଯାଇଛି, ଠିକ୍ ସେହିପରି ଭଙ୍ଗି ଶିକ୍ଷକ ଛାତ୍ରମାନଙ୍କ ପ୍ରାଣରେ ଅଭିନୟ ଶୈଳୀ ଜାଗ୍ରତ କରାଇବାକୁ ଚେଷ୍ଟା କରିବେ ।

୫ । ଆଦର୍ଶ ପଠନ ଓ ସାର କଥନ ପାଠକୁ ଛାଡ଼ିଦେଲେ ଅନ୍ୟ ପାଠ ଗୁଡ଼ିକ ପଠନ ଶିକ୍ଷାଦାନ ପ୍ରଣାଳୀରେ ଶିକ୍ଷାଦେଇ ବିଷୟଗତ ପ୍ରଶ୍ନ ଚିନ୍ତାମୂଳକ ପ୍ରଶ୍ନର ଆଲୋଚନା ଶବ୍ଦାର୍ଥ ପାଇଁ ବାକ୍ୟଗଠନ ଆଦିର ଆଲୋଚନା ବୋଲି ବୁଝିବାକୁ ହେବ ।



### ଜୁନ ୧ ସପ୍ତାହ—୭ ପାଠ

୧ । ପୃଥିବୀ ପ୍ରତି ପଦ୍ୟର ପଠନ ଓ ସାର କଥନ
( ଦୁଇ ପ୍ରକାର ପଦ୍ୟର ପଠନ ଆଦର୍ଶ ଦେବାକୁ ହେବ )

୨ । 'ପୃଥିବୀ ପ୍ରତି' ପଦ୍ୟର ୧ ମରୁ ୫ ମ ପଦ ପଠନ ଓ ଆଲୋଚନା ।

୩ । ,, ଅବଶିଷ୍ଟାଂଶ ପଦର ଆଲୋଚନା ।

୪ । ,, ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।

୫ । ,, ସରଳାର୍ଥ :—

(କ) ନର ପଶୁ ପକ୍ଷୀ - - - - ଯାଉଅଛୁ ମାଗୋ ପୂରି ।
(ଖ) କାହାର ଆଦେଶେ - - - - ବ୍ୟାକୁଳ ସଦା ମୋ ମନ ।

ସୂଚନା:— ନୋଟ ପ୍ରଦାନରେ ପ୍ରଶ୍ନ ଗୁଡ଼ିକର ଉତ୍ତର ଲେଖାଯିବ ଓ ବ୍ୟାକରଣଗତ ଆଲୋଚନା କରାଯିବ ।

୬ । 'ଗୁପ୍ତଧନ' ବିଷୟର ଆଦର୍ଶ ପଠନ ଓ ସାର କଥନ ।

## ଜୁଲାଇ ୪ ସପ୍ତାହ ୨୪ ପାଠ

୧ । 'ଗୁପ୍ତଧନ' ବିଷୟର 'ବୃଦ୍ଧ ଉମାଶଙ୍କର' ଠାରୁ ଚକ୍ଷୁ ମୁଦ୍ରିତ କଲେ ପର୍ଯ୍ୟନ୍ତ ପଠନ ଓ ଆଲୋଚନା ।

୨ । ,, ବିଷୟ ଅବଶିଷ୍ଟାଂଶରେ ପଠନ ଓ ଆଲୋଚନା ।

୩ । ,, ,, ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।

୪ । ,, ,, ସରଳାର୍ଥ:—

କ) ସେହି କହୁ କହୁ ......ଚକ୍ଷୁ ମୁଦ୍ରିତ କଲେ ।

(ଖ) ତସ୍ପରେ ଜମିର ......କରସ୍ଥ ହୋଇ ରହିଲେ ।

(ଗ) ବସି ଖାଇଲେ ନଈ ବାଲି ସରେ—

୫ । 'ଝଣ୍ଡିଆ ଭୂତ'ର ଆଦର୍ଶ ପଠନ ଓ ସାର କଥନ ।

୬ । ,, ଆଦର୍ଶ ପଠନ ଓ ଆଲୋଚନା ।

୭ । ,, ପ୍ରଶ୍ନ ଆଲୋଚନା. ନୋଟ ପ୍ରଦାନ ଓ ବହିରେ ଥିବା ଛବି ସମ୍ପର୍କରେ ଆଲୋଚନା ।

୮ । ,, ସରଳାର୍ଥ:—

(କ) ଏହି ଘୂର୍ଣ୍ଣିବାତ୍ୟା — ସଙ୍ଘଟିତ ହୁଏ ।

(ଖ) ଘୂର୍ଣ୍ଣିବାୟୁର ଭିନ୍ନ — ବଡ଼ ଭୀଷଣ ।

୯ । ଇନ୍ଦ୍ରଧନୁ ଦେବୀର ଆଦର୍ଶ ପଠନ ଓ ସାର କଥନ ।

୧୦ । ,, ,, ୧ମ ଓ ୨ୟ ପଦ 'ବରଷା ଝିଟିକେ' ଠାରୁ 'ମାଳଶୋଭେ'

୧୧ । ,, ଅବଶିଷ୍ଟାଂଶ ।

୧୨ । ,, ,, ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।

୧୩ । ସରଳାର୍ଥ: —

(କ) ତ୍ରିକୋଣ କାଚେ ବନ୍ଧଦେହ ବହେ ।

(ଖ) ଆକାଶୁଁ ନଭେ—ଦେଖଣାହାରି ମନୁ ।

(ଗ) ସୂର୍ଯ୍ୟଠାରେ— ସବୁରି ମନ ମୋହେ ।

୧୪ । 'ଘଣ୍ଟା' ବିଷୟ ଆଦର୍ଶ ପଠନ ଓ ସାର କଥନ ଓ ବହିର ଛବି ଗୁଡ଼ିକ ବିଷୟରେ ଆଲୋଚନା ।

୧୫ । ,, ,, 'ସମସ୍ତ' ଠାରୁ 'ବୋଲି କଥିତ ଅଛି' ପର୍ଯ୍ୟନ୍ତ ପଠନ ଓ ଆଲୋଚନା ।

୧୬ । ,, ,, ଅବଶିଷ୍ଟାଂଶର ପଠନ ଓ ଆଲୋଚନା ।

୧୭ । 'ଘଣ୍ଟା' ବିଷୟର ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
ସରଳାର୍ଥ:—
(କ) ଏଣୁ ଘଣ୍ଟା ପରି ......ଗ୍ରହଣ କରି ନେଇଛନ୍ତି ।
(ଖ) ଜୀବନର ସକଳ କ୍ଷେତ୍ରରେ —....କର୍ମ ତତ୍ପର କରୁଛି ।
୧୮ । 'ପିତୃଭକ୍ତି' ବିଷୟ ଆଦର୍ଶ ପଠନ ଓ ନୋଟ ପ୍ରଦାନ ।
୧୯ । " " ମିବାରରାଣୀ— କହିବାର ଅଧିକାର ନାହିଁ ପର୍ଯ୍ୟନ୍ତ ପଠନ ଓ ଆଲୋଚନା ।
୨୦ । " " 'କଥା ଗୁଡ଼ିକ— ମୋତେ କ୍ଷମାକର' ପର୍ଯ୍ୟନ୍ତ ପଠନ ଓ ଆଲୋଚନା ।
୨୧ । " " ଅବଶିଷ୍ଟାଂଶର ପଠନ ଓ ଆଲୋଚନା
୨୨ । " " ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୨୩ ଓ ୨୪ । ସରଳାର୍ଥ:—
(କ) ଯେଉଁ ସୂର୍ଯ୍ୟ ବଂଶର ରାଜା— ପାସୋରି ପକାଇଲ ?
(ଖ) ଯେତେ କାଳ — ବିନାଶ କରି ପାରିବ ନାହିଁ ।
(ଗ) କଠୋର କର୍ତ୍ତବ୍ୟ— ଜାହାର ସ୍ଥାନ ନାହିଁ ।
(ଘ) ଏ ହତ୍ୟାରେ ପାପ— ତୁମ୍ଭର ନୁହେଁ ।
(ଙ) ଆଜି ଆପଣ ଯେଉଁ ଉଚ୍ଛିଷ୍ଟ— ପରିତ୍ୟାଗ କରିବ ।

## ଅଗଷ୍ଟ ୪ ସପ୍ତାହ ୨୪ ପାଠ

୧ । 'କାଳଜାଈରେ ସନ୍ଧ୍ୟା' ପଦ୍ୟର ଆଦର୍ଶ ପଠନ ଓ ସାର କଥନ ।
୨ । " " ୧ମରୁ ୭ମ ପଦ ପର୍ଯ୍ୟନ୍ତ ପଠନ ଓ ଆଲୋଚନା ।
୩ । " " ୮ମରୁ ୧୪ଶ ପର୍ଯ୍ୟନ୍ତ ପଠନ ଓ ଆଲୋଚନା ।
୪ । " " ଅବଶିଷ୍ଟାଂଶର ପଠନ ଓ ଆଲୋଚନା ।
୫ । " " ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୬ । " " ସରଳାର୍ଥ:—
(କ) ଅସ୍ତଗାମୀ ରବି କିରଣ— ଶୋଭିବଚନ ବଳେ ।
(ଖ) ପୁଣି ଏ ମୁହାଣ— ହେବ ମୁଖର ?
(ଗ) ବିଦେଶ ବେପାରୁଁ— ଲୁପ୍ତ ଗୌରବ ?
୭ । 'ଆଲୁଅ ଲିଭିଗଲା' ବିଷୟର ଆଦର୍ଶ ପଠନ ଓ ସାର କଥନ ।
୮ । ଆଲୁଅ ଲିଭିଗଲା ବିଷୟର ମୂଳରୁ— ନରନାରୀ ସମସ୍ତଙ୍କର ପର୍ଯ୍ୟନ୍ତ ପଠନ ଆଲୋଚନା ।
୯ । ଆଲୁଅ ଲିଭିଗଲା ବିଷୟ ଅବଶିଷ୍ଟାଂଶର ପଠନ ଓ ଆଲୋଚନା ।
୧୦ । ଆଲୁଅ ଲିଭିଗଲା ବିଷୟ ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୧୧ । ବାପୁଜୀଙ୍କ ବିଷୟରେ ବିଶେଷ ଆଲୋଚନା ଓ ନୋଟ ପ୍ରଦାନ ।

୧୨ । ଆଲୁଅ ଲିଭିଗଲା ବିଷୟର ସରଳାର୍ଥ :—

କ) ଏ ଆଘାତ—ସମସ୍ତଙ୍କ ପାଇଁ ।

(ଖ) ଆମେ ହିଂସା ବା—ନିଷ୍ଠୁର ବ୍ୟଥିତ ହେବ ।

(ଗ) କିନ୍ତୁ ଦୁର୍ବଳତା ଆମ ପାଖରେ ସ୍ଥାନ ନ ପାଉ ନ ହେଁ ।

୧୩ । 'ଫଳବୃକ୍ଷ' ବିଷୟର ଆଦର୍ଶ ପଠନ ଓ ସାର କଥନ ।

୧୪ । ଫଳବୃକ୍ଷ ବିଷୟରେ 'ଖତ ଡାଳ—ବେଶୀ ଦିନ ରଖାଯାଇ ପାରେ' ପର୍ଯ୍ୟନ୍ତ ପଠନ

୧୫ । ଫଳବୃକ୍ଷ ବିଷୟ ଅବଶିଷ୍ଟାଂଶର ପଠନ ଓ ଆଲୋଚନା ।

୧୬ । ଫଳବୃକ୍ଷ ବିଷୟରପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।

୧୭ରୁ ୨୪ । ପୁନରାଲୋଚନା ।

ସରଳାର୍ଥ :—

[କ] ଗ୍ରାମବାସୀଙ୍କର ସ୍ୱାସ୍ଥ୍ୟୋନ୍ନତି...ସହାୟକ ହେବ ।

[ଖ] ସେଥିରେ ଖର୍ଚ୍ଚ ଯେପରି କମ୍ ହେବ ଆୟ ମଧ୍ୟ ସେହିପରି ବେଶିହେବ ।

ସୂଚନାଃ—ପୁନରାଲୋଚନା ପାଠରେ ବାକ୍ୟ ଗଠନ ଶବ୍ଦାର୍ଥ ଓ ସରଳାର୍ଥ ଗୁଡ଼ିକ ଯାହା ପୂର୍ବରୁ ନୋଟ କରାଯାଇଥିବ ସେ ଗୁଡ଼ିକର ଅଭ୍ୟାସ ଆଲୋଚନା କରାଯିବ ।

## ସେପ୍ଟେମ୍ବର ୪ ସପ୍ତାହ ୨୪ ପାଠ

୧ । 'ଦେଶ ପ୍ରେମପ୍ରଦୀପ ଜାଳ' ପଦ୍ୟର ଆଦର୍ଶ ପଠନ ଓ ସାର କଥନ ।

୨ । ,, ,, '୧ମରୁ ୭ମ ପଦ' ପର୍ଯ୍ୟନ୍ତ ।

୩ । ,, ,, '୮ମରୁ ୧୪ଶ ପଦ' ପର୍ଯ୍ୟନ୍ତ ।

୪ । ,, ,, '୧୫ଶରୁ ୨୦ଶ ପଦ' ପର୍ଯ୍ୟନ୍ତ ପଠନ ଓ ଆଲୋଚନା ।

୫ । 'ଦେଶ ପ୍ରେମପ୍ରଦୀପ ଜାଳ' ପଦ୍ୟର ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ଏବଂ ଶିବାଜୀଙ୍କ ବିଷୟରେ ବିଶେଷ ଆଲୋଚନା ।

୬ । ,, ,, ସରଳାର୍ଥ :—

[କ] ଏ ଥାଳରେ—କୋଟିଜନ ।

[ଖ] ଦେଶ ଜନନୀର—ପ୍ରଦୀପ ଜାଳ ।

[ଗ] ନୋହି କୁଣ୍ଠିତ—ନୁଆଇଁ ଶିର ।

୭ । 'ସ୍ୱପ୍ନଟି ସତ୍ୟ ହେଲା' ବିଷୟ ଆଦର୍ଶ ପଠନ ଓ ସାର କଥନ 'ଶିକ୍‌ଲଣ ଓ ଚଉଡ଼ା' ଠାରୁ ସମୁଦ୍ର କୂଳରେ ଲାଗିଛି ପର୍ଯ୍ୟନ୍ତ ।

୮ । 'ସ୍ୱପ୍ନଟି ସତ୍ୟ ହେଲା' ବିଷୟର ଅବଶିଷ୍ଟାଂଶର ଆଦର୍ଶ ପଠନ ଓ ସାର କଥନ ।

୯ । ,, ,, ୧ମ ଭାଗର ପଠନ ଓ ଆଲୋଚନା ।

୧୦ । ,, ,, ୨ୟ ଭାଗର ଆଲୋଚନା ।

୧୧ । ,, ,, ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।

୧୨ । 'ସ୍ୱପ୍ନଟି ସତ୍ୟ ହେଲା' ବିଷୟର ସରଳାର୍ଥ:—
(କ) ବନ୍ଦରର ଗୋଟିଏ ପଟରେ— ନବାଂକ କରି ଦେଇଥାଏ ।
(ଖ ଓଡ଼ିଆ ଜାତିର— ବାସ୍ତବତାରେ ପରିଣତ ହୋଇଛି ।
(ଗ) ପ୍ରଗାଢ଼ମାଳିନୀ ନଗରୀଟିର-– ଶୋଭା ସୃଷ୍ଟି କରିଥାଏ ।
୧୩ । 'ବାଆସିଲ' ବିଷୟର ଆଦର୍ଶ ପଠନ ଓ ସାର କଥନ ୧ମ ଭାଗ—
ଫ୍ରାନ୍ସ୍ ସଙ୍ଖ୍ୟାତନାମା— ଚେଷ୍ଟା କଲେ' ପର୍ଯ୍ୟନ୍ତ ।
୧୪ । ବାଆସିଲ ବିଷୟ ୨ୟ ଭାଗର (ଅବଶିଷ୍ଟାଂଶର ଆଦର୍ଶ ପଠନ ଓ ସାରକଥନ ।
୧୫ । ବାଆସିଲ ବିଷୟ ୧ମ ଭାଗର ପଠନ ଓ ଆଲୋଚନା ।
୧୬ । ବାଆସିଲ ବିଷୟର ୨ୟ ଭାଗର ପଠନ ଓ ଆଲୋଚନା ।
୧୭ । ବାଆସିଲ ବିଷୟର ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୧୮ । ବାଆସିଲ ବିଷୟର ସରଳାର୍ଥ:—
(କ) ଅଭାବ ଓ ଅସୁବିଧା— ବାଟ ଦେଖାଏ ।
(ଖ) ମନୁଷ୍ୟ ବୁଦ୍ଧି ବଳରେ— ଗୋଟିଏ ଦୃଷ୍ଟାନ୍ତ ।
(ଗ) କୌଣସି ଆନ୍ତରିକ— ଦେଇଛି ବାଆସିଲ ।
୧୯ରୁ ୨୪ ପାଠ ପୁନରାଲୋଚନା ଓ ପ୍ରଥମ ପରୀକ୍ଷା ଗ୍ରହଣ ।

## ଅକ୍ଟୋବର ୩ ସପ୍ତାହ— ୧୮ ପାଠ

୧ । 'କସ୍ତୁରବା' ପଦ୍ୟର ଆଦର୍ଶ ପଠନ ଓ ସାର କଥନ ।
୨ । କସ୍ତୁରବା ପଦ୍ୟର ୧ମରୁ ୭ମ ପଦ ପଠନ ଓ ଆଲୋଚନା ।
୩ । କସ୍ତୁରବା ପଦ୍ୟର ୮ମରୁ ୧୪ଶ ପଦ ପଠନ ଓ ଆଲୋଚନା ।
୪ । କସ୍ତୁରବା ପଦ୍ୟର ୧୫ଶରୁ ୨୦ଶ ପଦ ପଠନ ଓ ଆଲୋଚନା ।
୫ । କସ୍ତୁରବା ପଦ୍ୟର ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୬ । କସ୍ତୁରବା ପଦ୍ୟର ସରଳାର୍ଥ:—
(କ) ବା ମନେ ପଡ଼େ— ସେ ତ ଅନଶନ ।
(ଖ) ଆକୁଳ ଆବେଗେ— ଜୟ ଗାନ୍ଧୀଜୀ ଜୟ !
(ଗ) ଫୁଲପରି ଫୁଟିଥିଲ— ଦେଶବାସୀମାନେ ।
୭ । 'ହକି' ବିଷୟର ଆଦର୍ଶ ପଠନ ଓ ସାର କଥନ ।
୮ । ହକି ବିଷୟର ମୂଳରୁ— ସ୍ଥାନ ଅଧିକାର କରିଥିଲା ପର୍ଯ୍ୟନ୍ତ ପଠନ ଓ ଆଲୋଚନା
୯ । ହକି ବିଷୟ ଅବଶିଷ୍ଟାଂଶର ପଠନ ଓ ଆଲୋଚନା ।
୧୦ । ହକି ବିଷୟର ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୧୧ । ହକି ବିଷୟର ସରଳାର୍ଥ:—
(କ) ସେ ତାଙ୍କ ସଫଳତାରେ— ମୁଗ୍ଧ ହେଉଥିଲେ ।
(ଖ) ପ୍ରକୃତରେ କହିବାକୁ— ପ୍ରଧାନ ଗୌରବ ।
(ଗ) ଭାରତର ଏହି— ଅପୂର୍ବ— କୃତିତ୍ୱ ।

୧୨ । ଦୂର୍ଗତ ମାନବର ବନ୍ଧୁ ଡାକ୍ତର ସ୍ୱାମୀନାଥର ବିଷୟ ଆଦର୍ଶ ପଠନ ଓ ସାର କଥନ—୧ମଭାଗ ମୂଳରୁ ଆସିବାକୁ ଲାଗିଲେ ପର୍ଯ୍ୟନ୍ତ ।

୧୩ । ଉକ୍ତ ବିଷୟ ୨ୟ ଭାଗର [ଅବଶିଷ୍ଟାଂଶର] ଆଦର୍ଶ ପଠନ ଓ ସାର କଥନ ।

୧୪ । ,, ୧ମ ଭାଗର ପଠନ ଓ ଆଲୋଚନା ।

୧୫ । ,, ୨ୟ ଭାଗର ପଠନ ଓ ଆଲୋଚନା ।

୧୬ । ,, ସରଳାର୍ଥ :—

[କ] ତାଙ୍କ ଜୀବନବ୍ୟାପୀ—ସହାୟକ ହୋଇଥିଲା ।

[ଖ] ଏଣୁ ଅସହାୟ—କରିବା ପାଇଁ ସ୍ଥିର କଲେ ।

[ଗ] ପୂର୍ବପରି ଜନ ସେବାରେ—ଭୁଲି ପାରିଲେ ନାହିଁ ।

୧୮ । ପୁନରାଲୋଚନା ।

## ନଭେମ୍ବର ୪ ସପ୍ତାହ—୨୪ ପାଠ

୧ । 'ଏକତାର ବନ୍ୟା' ପଦ୍ୟର ଆଦର୍ଶ ପଠନ ଓ ସାର କଥନ ।

୨ । ,, ,, ୧ମ, ୨ୟ ଓ ୩ୟ ପଦର ପଠନ ଓ ଆଲୋଚନା ।

୩ । ,, ,, ୪ର୍ଥ, ୫ମ ଓ ୬ଷ୍ଠ ପଦର ପଠନ ଓ ଆଲୋଚନା ।

୪ । ,, ,, ୭ମ ଓ ୮ମ ପଦର ପଠନ ଆଲୋଚନା ଓ ପ୍ରଶ୍ନ ଆଲୋଚନା ।

୫ । ,, ,, ସରଳାର୍ଥ ।

[କ] ମନରେ ନଥିଲା···ସ୍ୱାର୍ଥ କଥା ।

[ଖ] ଆଜ ଏ ଯୁଗରେ – – –ନବ ଚେତନାର ବନ୍ୟା ।

[ଗ] ୧-ସୃଜନାର ଶ୍ରମେ ସକଳେ ମଗନ ।

୨-ଯନ୍ତ୍ର ଗହ୍ୱରେ ରହିଥିଲା ଲାଗି ।

୩-ଅଭାବ ପୂରଣେ ସେହି ହେବ ସାହା, ଏଣ୍ଡ ବାକ୍ୟ ତିନିଗୋଟିର ସରଳାର୍ଥ ଲେଖ

୬ । ପୁନରାଲୋଚନା ପାଠ ।

୭ । 'ଲାଲ ବାହାଦୁର' ବିଷୟର ଆଦର୍ଶ ପଠନ ଓ ସାର କଥନ ।
୧ମ ଭାଗର –ମୂଳରୁ – – ବଡ଼ିଲା ନଈରେ ପହଁରି ପାରୁଥିଲେ ପର୍ଯ୍ୟନ୍ତ ।

୮ । 'ଲାଲବାହାଦୁର' ବିଷୟର ଅବଶିଷ୍ଟାଂଶର ଆଦର୍ଶ ପଠନ ଓ ସାର କଥନ ।

୯ । ,, ,, ୧ମ ଭାଗର ପଠନ ଓ ଆଲୋଚନା ।

୧୦ । ,, , ଅବଶିଷ୍ଟାଂଶର ଆଲୋଚନା ।

୧୧ । ,, ,, ପ୍ରଶ୍ନ ଆଲୋଚନା ନୋଟ ପ୍ରଦାନ ।

୧୨ । ,, ,, ସରଳାର୍ଥ :—

[କ] ମୁଁ ପ୍ରତ୍ୟକ୍ଷ ଭାବରେ···ଦୁର୍ଘଟଣା ପାଇଁ ଦାୟୀ ।

[ଖ] ତାଙ୍କର ସାଧୁତା···ଖ୍ୟାତି ଅର୍ଜନ କରିଥିଲେ ।

[ଗ] ସ୍ନେହ ଓ ପ୍ରୀତିରେ···ଶାନ୍ତିଲାଭ କରାଯାଏ ।

୧୩ । 'ସମୁଦ୍ରର ରହସ୍ୟ' ବିଷୟର ଆଦର୍ଶ ପଠନ ଓ ସାର କଥନ ।
୧୪ । ,, ,, ମୂଳରୁ ··ଥିବାର ଜଣାଯାଏ ଏପର୍ଯ୍ୟନ୍ତ ଅଂଶର ପଠନ ଓ ଆଲୋଚନା ।
୧୫ । ,, ,, ଅବଶିଷ୍ଟାଂଶର ପଠନ ଓ ଆଲୋଚନା ।
୧୬ । ,, ,, ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୧୭ । ,, ,, ସରଳାର୍ଥ ।
(କ) ଦେଖିଛ କ ନ ର --- ତାର ଆକାର ।
(ଖ) ସିନ୍ଧୁ ଗର୍ଭର ରହସ୍ୟ --- ଅଗ୍ରସର ହେଲାଣି ।
(ଗ) ଲକ୍ଷୁଗ୍ରପ ସୃଷ୍ଟ, ଗବେଷଣା କେନ୍ଦ୍ର, ମୌସୁମୀ ବାୟୁ, ଆଗ୍ନେୟ ଗିରି, ମହାଶୂନ୍ୟ ଏଗୁଡ଼ିକର ସରଳାର୍ଥ ।
୧୮ । 'ସମର ଶିକ୍ଷାର୍ଥୀ ବାହ୍ୱନୀ' ବିଷୟର ଆଦର୍ଶ ପଠନ ଓ ସାର କଥନ ।
୧୯ । ,, ,, ମୂଳରୁ ବିନୋଦନ କରନ୍ତି ପର୍ଯ୍ୟନ୍ତ ପଠନ ଓ ଆଲୋଚନା ।
୨୦ । ,, ,, ଅବଶିଷ୍ଟାଂଶର ପଠନ ଓ ଆଲୋଚନା ।
୨୧ । 'ସମର ଶିକ୍ଷାର୍ଥୀ ବାହ୍ୱନୀ' ବିଷୟର ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୨୨ ରୁ ୨୪ । ପୁନରାଲୋଚନା ଓ ସରଳାର୍ଥ :— ମାତୃଭୂମି ନଜର --- କର୍ତ୍ତବ୍ୟ ଆଶାକରେ ।

## ଡିସେମ୍ବର ୩ ସପ୍ତାହ—୧୮ ପାଠ

୧ । 'ଜାଗ୍ରତ ପକ୍ଷୀ' ପଦ୍ୟର ଆଦର୍ଶ ପଠନ ଓ ସାର କଥନ ।
୨ । ,, ୧ମ ରୁ ୩ୟ ପଦ ପଠନ ଓ ଆଲୋଚନା ।
୩ । ,, ୪ର୍ଥ ରୁ ୬ଷ୍ଠ ପଦ ଆଲୋଚନା ।
୪ । ,, ଅବଶିଷ୍ଟାଂଶର ପଠନ ଓ ଆଲୋଚନା ।
୫ । ,, ସରଳାର୍ଥ ।
[କ] ଶିଖୀଟିଏ ମାତ୍ର --- ଛବଲ ଗ୍ରନ୍ତ ।
[ଖ] ସେଥିପାଇଁ --- ଜାତ ପ୍ରତ୍ତ୍ୱ ।
[ଗ] ବହଙ୍ଗମେ ସାର --- ଭଙ୍ଗିମା ତାର ।
୬ । "ପ୍ଲାଷ୍ଟିକ୍" ବିଷୟର ଆଦର୍ଶ ପଠନ ଓ ସାର କଥନ ।
୭ । ,, ମୂଳରୁ --- ସୁନ୍ଦର ଦେଖାଯାଏ ପର୍ଯ୍ୟନ୍ତ ପଠନ ଓ ଆଲୋଚନା ।
୮ । ,, ଅବଶିଷ୍ଟାଂଶର ପଠନ ଓ ଆଲୋଚନା ।
୯ । ,, ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୧୦ । ,, ସରଳାର୍ଥ ।
[କ] ନଜର ବୁଦ୍ଧି --- ପୃଥିବୀ ସୃଷ୍ଟି କରିଛୁ ।
[ଖ] ମଣିଷର --- ସନ୍ଦେହ ନାହିଁ ।
୧୧ । 'ବୀର ସୁରେନ୍ଦ୍ର ସାଏ' ବିଷୟ ଅବଶିଷ୍ଟାଂଶର ଆଦର୍ଶ ପଠନ ଓ ସାର କଥନ । ୧ମ ଭାଗ—ମୂଳରୁ 'ସମ୍ବଲପୁରରେ ପହଞ୍ଚିଲି' ପର୍ଯ୍ୟନ୍ତ ।

୧୨ । 'ଖାର ସୁରେନ୍ଦ୍ର ସାଏ' ବିଷୟର ଅବଶିଷ୍ଟାଂଶର ଆଦର୍ଶ ପଠନ ଓ ସାର କଥନ ।
୧୩ । „ ସୁରେନ୍ଦ୍ର ସାଏଙ୍କ ଜୀବନୀ ଆଲୋଚନା ।
୧୪ । „ ଉକ୍ତ ୧ମ ଭାଗର ପଠନ ଓ ଆଲୋଚନା ।
୧୫ । „ ଉକ୍ତ ୨ୟ ଭାଗର „
୧୬ । „ ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୧୭ । „ ସରଳାର୍ଥ ।
(କ) ମୁଁ କେଡ଼େ ହତଭାଗ୍ୟ···ଗ୍ରହଣ କର ସୁବୃନ୍ଦର ।

ସୂଚନା:—ଉକ୍ତ 'ସୁରେନ୍ଦ୍ର ସାଏ' ବିଷୟ ନାଟକାକାରରେ ଲିଖିତ । ଶିକ୍ଷକ ଆଦର୍ଶ ପଠନ ଦେଲାବେଳେ ସ୍ୱର ବଦଳାଇ ସୁରେନ୍ଦ୍ର ସାଏ ଓ ଡାକ୍ତରଙ୍କର କଥା ଗୁଡ଼ିକ ଯଥାଯଥ କହିବେ ।

୧୮ । ଏ 'ସୁରେନ୍ଦ୍ର ସାଏ'ଙ୍କ ବିଷୟଟି ପିଲାମାନଙ୍କ ଦ୍ୱାରା ଅଭିନୀତ ହେବ ।

## ଜାନୁଆରୀ ୪ ସପ୍ତାହ – ୨୪ ପାଠ

୧ । 'ମାଟି ଦେବତାର ପୂଜା' ଗଳ୍ପର ଆଦର୍ଶ ପଠନ ଓ ସାର କଥନ ।
ଡେଙ୍ଗା ହୋଇଥାନ୍ତା ପର୍ଯ୍ୟନ୍ତ ।
୨ । ଉକ୍ତ ଗଳ୍ପର ଅବଶିଷ୍ଟାଂଶର ଆଦର୍ଶ ପଠନ ଓ ସାରକଥନ ।
୩ । 'ମାଟି ଦେବତାର ପୂଜା' ଗଳ୍ପର ୧ମ ଭାଗର ପଠନ ଓ ଆଲୋଚନା ।
୪ । „ „ ଉକ୍ତ ୨ୟ ଭାଗର ପଠନ ଓ ଆଲୋଚନା ।
୫ । „ „ ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୬ । କୁକୁଡ଼ା ପାଳନ ବିଷୟର ଆଦର୍ଶ ପଠନ ଓ ସାରକଥନ ।
୭ । „ ମୂଳରୁ···'ସୁଯୋଗ ପାଉଛୁ' ପର୍ଯ୍ୟନ୍ତ ପଠନ ଓ ଆଲୋଚନା ।
୮ । „ ଅବଶିଷ୍ଟାଂଶର ପଠନ ଓ ଆଲୋଚନା ।
୯ । „ ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୧୦ । ସରଳାର୍ଥ: —
(କ) କୁକୁଡ଼ା ପାଳନର ····· ମାଂସ ପାଇ ପାରିବେ ।
୧୧ । 'ଏହି ଜୟଗୀତି ଜନତା ଗାଏ' ପଦ୍ୟର ଆଦର୍ଶ ପଠନ ଓ ସାରକଥନ ।
୧୨ । „ ଐତିହାସିକ ତଥ୍ୟ ଆଲୋଚନା ।
୧୩ । „ ୧ମରୁ ୫ମ ପଦ ପଠନ ଓ ଆଲୋଚନା ।
୧୪ । „ ୬ଷ୍ଠରୁ ୧୦ମ ପଦ ପଠନ ଓ ଆଲୋଚନା ।
୧୫ । „ ୧୧ଶରୁ ୧୬ଶ ପଦ ପଠନ ଓ ଆଲୋଚନା ।
୧୬ । „ ଅବଶିଷ୍ଟାଂଶ ପଦ ପଠନ ଓ ଆଲୋଚନା ।
୧୭ । „ ପ୍ରଶ୍ନ ଆଲୋଚନା ଓ ନୋଟ ପ୍ରଦାନ ।
୧୮ । „ ସରଳାର୍ଥ:—
(କ) ଦୁର୍ବାର ବେଗେ··· ଟ୍ୟାଙ୍କ ଚା ପ୍ରଭି

(ଖ) ଚମକେ ନିମିଷେ··· ସୋଦରଜାୟା ।
(ଗ) ଜନ୍ମଭୂମିର··· ରକ୍ତପାତ ।
୧୯ରୁ ୨୫ । ପୁନରାଲୋଚନା ଓ ୨ୟ ପରୀକ୍ଷା ଗ୍ରହଣ ।

## ଫେବୃଆରୀ ୪ ସପ୍ତାହ— ୨୪ ପାଠ

ସାଧାରଣ ପରୀକ୍ଷା ପାଇଁ ପ୍ରସ୍ତୁତି ପୁନରାଲୋଚନା ।

**ସୂଚନା:—** ଏ ପୁନରାଲୋଚନା ପାଠ ଗୁଡ଼ିକରେ ଶିକ୍ଷକ ନୋଟ ଦେଇଥିବା ବିଭିନ୍ନ ବିଷୟର ସରଳାର୍ଥ ଓ ବ୍ୟାକରଣଗତ ପ୍ରଶ୍ନର ଆଲୋଚନା କରିବେ ।

୧ରୁ ୬ । ପୃଥିବୀ ପ୍ରତି ଦେୟ ।
୭ରୁ୧୨ । ଗୁରୁପ୍ରଧାନ ଓ ଖଣ୍ଡିଆ ଭୂତ ।
୧୩ରୁ୧୮ । ଇନ୍ଦ୍ରଧନୁ ଓ ଘଣ୍ଟା ।
୧୯ରୁ୨୪ । ପିତୃଭକ୍ତି ।

## ମାର୍ଚ୍ଚ ୩ ସପ୍ତାହ— ୧୮ ପାଠ

୧ରୁ ୩ । କାଳଜାଈରେ ସନ୍ଧ୍ୟା ।
୪ରୁ ୬ । ଆଲୁଅ ଲିଭିଗଲା ।
୭ । ବ୍ୟାକରଣଗତ ଗୋଟିଏ ପ୍ରଶ୍ନର ଉତ୍ତର ଲେଖିବା ।
୮ । ଦୁଇଟି ସରଳାର୍ଥ ପ୍ରଶ୍ନର ଉତ୍ତର ସଂଗ୍ରହ (ଲିଖିତ)
୯ଓ୧୦ । ଦେଶପ୍ରେମପାଇଁ ଜାଳ ।
୧୧ଓ୧୨ । ସ୍ୱପ୍ନଟି ସତ୍ୟ ହେଲା ।
୧୩ । ଦୁଇଟି ପ୍ରଶ୍ନର ଉତ୍ତର ସଂଗ୍ରହ (ଲିଖିତ)
୧୪ । କସ୍ତୁରବା ।
୧୫ । ସ୍ୱାସ୍ଥ୍ୟହିଁ ସର ।
୧୬ । ଏକତାର ଶକ୍ତି ।
୧୭ । ଲାଲବାହାଦୁର ।
୧୮ ।

## ଅପ୍ରେଲ ୩ ସପ୍ତାହ— ୧୮ ପାଠ

୧ରୁ୧୮ । ପୁନରାଲୋଚନା ( ଫେବୃଆରୀ ମାସପର୍ଯ୍ୟନ୍ତ )

**ସୂଚନା:—** ଏ ପୁନରାଲୋଚନା ପାଠରେ ଶିକ୍ଷକ ବିଭିନ୍ନ ପ୍ରଶ୍ନ ଉତ୍ତର, ସରଳାର୍ଥ, ବ୍ୟାକରଣ ପ୍ରଶ୍ନଗୁଡ଼ିକ (କଳାପଟାରେ) ଉତ୍ତର ସଂଗ୍ରହ କରିବେ ଏବଂ ଯଥା ସମ୍ଭବ ସଂଶୋଧନ କରିବେ । ପ୍ରଶ୍ନ ଗୁଡ଼ିକ ନିଜେ ପ୍ରସ୍ତୁତ କରି ପାରନ୍ତି କିମ୍ବା ଉପଯୁକ୍ତ ମନେ କରୁଥିବା କୌଣସି ଉଚ୍ଚ ପ୍ରାଥମିକ ଟେଷ୍ଟ ପେପରରୁ ସଂଗ୍ରହ କରି ପାରନ୍ତି ।



# ରଚନା

ସପ୍ତାହରେ ୩ ପିରିଅଡ୍— ୧ମ ପିରିଅଡ୍‌ରେ ଆଲୋଚନା— ବିଷୟ ଉପସ୍ଥାପନ, ତାରିଖ ଦେଇ ପ୍ରଶ୍ନ ଲେଖିବା— ସୂଚୀ ଲେଖିବା କାର୍ଯ୍ୟ— ୨ୟ ପିରିଅଡ୍‌ରେ ତା ପରଦିନ ତାରିଖ ଦେଇ ରଚନା ଲେଖିବେ— ୩ ପିରିଅଡ୍‌ରେ ସଂଶୋଧନ ପାଇଁ ବ୍ୟବସ୍ଥା ଅର୍ଥାତ୍ ଶିକ୍ଷକ ଖାତା ଗୁଡ଼ିକ ନେଇ ସଂଶୋଧନ କରି ନେବେ ଏବଂ ପ୍ରସ୍ତୁତ ହୋଇ ଶ୍ରେଣୀକୁ ଆସିବେ । ସାଧାରଣ ଭୁଲ ଗୁଡ଼ିକ କଳାପଟ୍ଟରେ ଲେଖିଦେବେ ଏବଂ ବ୍ୟକ୍ତିଗତ ଭୁଲ ଗୁଡ଼ିକ ଆଲୋଚନା ବା ପୁନ ଲିଖନ କାର୍ଯ୍ୟ କରାଯିବ । ଏଣୁ ୩୭ ସପ୍ତାହ ପାଇଁ ୩୭ଟି ରଚନା ନିମ୍ନରେ ଦିଆଗଲା । ଶିକ୍ଷକ ଅଧିକ ଲେଖାଇ ପାରିଲେ କୌଣସି ବାଧା ନାହିଁ ।

## ଜୁନ ୧ ସପ୍ତାହ— ୧ ପାଠ

୧ । ଗତ ଗ୍ରୀଷ୍ମ ବନ୍ଦ କିପରି କଟାଇଲ ଲେଖି ବନ୍ଧୁଙ୍କ ନିକଟକୁ ପତ୍ର ଦିଅ ।

## ଜୁଲାଇ ୪ ସପ୍ତାହ—୪ ପାଠ

୧ । ସ୍ୱାସ୍ଥ୍ୟରକ୍ଷାର ସାଧାରଣ ନିୟମ ଗୁଡ଼ିକ ତୁମେ କିପରି ପାଳନ କର ଲେଖ ।
୨ । ଗୋଟିଏ ଆଦର୍ଶ ବିଦ୍ୟାଳୟ ।
୩ । ଖେଳ ଓ ବ୍ୟାୟାମର ଉପକାରିତା ।
୪ । ଧାନ ଗଛ ।

## ଅଗଷ୍ଟ ୪ ସପ୍ତାହ—୪ ପାଠ

୧ । ଗତ ବନ୍ୟାରେ କିପରି କ୍ଷତି ହୋଇଛି ବର୍ଣ୍ଣନା କରି ମାମୁଁଙ୍କ ପାଖକୁ ପତ୍ର ଦିଅ ।
୨ । ସ୍ୱାଧୀନତା ଦିବସ ।
୩ । ବିଭିନ୍ନ ରସିଦର ଆଦର୍ଶ ।
୪ । ଗ୍ରାମ ନିକଟସ୍ଥ ହାଟର ଦୃଶ୍ୟ ।

## ସେପ୍ଟେମ୍ବର ୪ ସପ୍ତାହ—୪ ପାଠ

୧ । ନଡ଼ିଆ ଗଛ ।
୨ । ଗୁରୁ ଦିବସରେ ତୁମର କାର୍ଯ୍ୟ ବର୍ଣ୍ଣନା କରି ସାନ ଭଉଣୀ ନିକଟକୁ ପତ୍ର ।
୩ । ନିକଟସ୍ଥ ଗୋଟିଏ ଦର୍ଶନୀୟ ସ୍ଥାନ ।
୪ । ପୁନରାଲୋଚନା ଓ ପ୍ରଥମ ପରୀକ୍ଷା ଗ୍ରହଣ ।

## ଅକ୍ଟୋବର ୩ ସପ୍ତାହ— ୩ ପାଠ

୧ । ଗାଁ ଧୋବାର ଆତ୍ମ କାହାଣୀ ।
୨ । ସ୍କୁଲ ବଗିଚାର ଦୃଶ୍ୟ ବର୍ଣ୍ଣନା କରି ବାପାଙ୍କ ନିକଟକୁ ପତ୍ର ।
୩ । କପାଗଛ ।

## ନଭେମ୍ବର ୪ ସପ୍ତାହ— ୪ ପାଠ

୧ । ଦଶହରା ପର୍ବ ।
୨ । ନଡ଼ିଆ ଗଛର ଆତ୍ମ କାହାଣୀ ।
୩ । ଧର୍ମପଦର କାର୍ଯ୍ୟ ।
୪ । ବର୍ଷା ଋତୁରେ ଗ୍ରାମର ଦୃଶ୍ୟ ।

## ଡ଼ିସେମ୍ବର ୩ ସପ୍ତାହ— ୩ ପାଠ

୧ । ପାଉଁଶର ଆଦର୍ଶ ।
୨ । ଗାଁରେ ବସନ୍ତ ହୋଇଛି ଏହାର ପ୍ରତିକାର ପାଇଁ ସ୍ଥାନୀୟ ସ୍ୱାସ୍ଥ୍ୟ ବିଭାଗ ଅଫିସରଙ୍କୁ ଦରଖାସ୍ତ ।
୩ । ଆଳୁଗଛ ।

## ଜାନୁଆରୀ ୪ ସପ୍ତାହ— ୪ ପାଠ

୧ । ଶୀତଦିନର ସକାଳ ।
୨ । ତୁମ ସାନଭାଇକୁ କାଛୁକୁଣ୍ଡିଆ ହୋଇଛି ବୋଲି ପତ୍ର ପାଇଲ । ସେ କେଉଁ ବିଷୟରେ ସାବଧାନ ହେବ ଲେଖି ପତ୍ର ଦିଅ ।
୩ । ସ୍କୁଲରେ ଶିଶୁଦିବସ କପରି ପାଳନ କଲ ବର୍ଣ୍ଣନ କର ।
୪ । ଆମ୍ବ ଗଛ ।

## ଫେବୃୟାରୀ ୪ ସପ୍ତାହ— ୪ ପାଠ

୧ । ପ୍ରଧାନ ଶିକ୍ଷକଙ୍କୁ ଛୁଟି ନିମନ୍ତେ ଦରଖାସ୍ତ ।
୨ । ହାଣ୍ଡିକୋଠର ଆଦର୍ଶ ।
୩ । ରେଳ ଓ ଶଗଡ଼ର କଥୋପକଥନ ।
୪ । ସ୍ୱାଧୀନତା ଦିବସର କାର୍ଯ୍ୟ ବର୍ଣ୍ଣନ କରି ବଡ଼ ଭାଇଙ୍କ ନିକଟକୁ ପତ୍ର ।

## ମାର୍ଚ୍ଚ ୩ ସପ୍ତାହ— ୩ ପାଠ

୧ । ବୋଉ ମାମୁଁ ଘରେ ଅଛନ୍ତି, ତୁମେ କେଉଁ ଅସୁବିଧା ଭୋଗ କରୁଛ ଲେଖି ବୋଉଙ୍କ ପାଖକୁ ପତ୍ର ଦିଅ ।
୨ । ଗ୍ରାମ ଭଣ୍ଡାରର ଆତ୍ମ କାହାଣୀ ।
୩ । ପଟାର ଆଦର୍ଶ ।

## ଅପ୍ରେଲ ୩ ସପ୍ତାହ— ୩ ପାଠ

୧ । ସରସ୍ୱତୀ ପୂଜା ।
୨ । ପାଣି ଓ ପବନଙ୍କ କଥୋପକଥନ ।
୩ । ଗ୍ରାମ୍ୟ ଜଳର ଅଭାବ ଦୂରୀକରଣ ନିମନ୍ତେ ସ୍ଥାନୀୟ ବି: ଡ଼: ଓ:ଙ୍କୁ ଆବେଦନ ।

ଏ ବ୍ୟତୀତ ନିମ୍ନ ବିଷୟ ଗୁଡ଼ିକ ଲେଖାଇ ପାରନ୍ତି:—

ଜାପାନୀ ଧାନ ଚାଷ ପ୍ରଣାଳୀ, ଗଣେଶ ପୂଜା, ଦୈନିକ ସମାଜ ପାଇବା ପାଇଁ ଆବେଦନ, ସ୍ଥାନୀୟ ମେଳା, ସ୍ଥାନୀୟ ସ୍ଥାନ, ମଟର ଗାଡ଼ି ଓ ଶଗଡ଼ ଗାଡ଼ିର କଥୋପକଥନ, ବସନ୍ତ ଋତୁ, ଦୋଳଯାତ୍ରା, ଦୋଳ ମେଳନ, ହାଇଜାର ପ୍ରତିଷେଧକ ପାଇଁ ଆବେଦନ, ବର୍ଷାର ଉପକାରିତା, ପ୍ରଦର୍ଶନୀ,ଗାଁ ଲୋକଙ୍କ ଜୀବିକା, ଉପସ୍ଥିତ ପରୀକ୍ଷା ପାଇଁ ପ୍ରସ୍ତୁତ, ବହିର ଆତ୍ମକାହାଣୀ, ଉଡ଼ାଜାହାଜ ଭ୍ରମଣ, କୌଣସି ତୀର୍ଥ, ରଥଯାତ୍ରା, କଦଳୀ ଚାଷ,କୃଷକର ଦିନକର କାର୍ଯ୍ୟ, ଛତାର ଆତ୍ମ କାହାଣୀ, ଲୁହା ଓ ସୁନାର କଳି, କ୍ରୀଡ଼ାପ୍ରତିଯୋଗିତା ପାଇଁ ନିକଟସ୍ଥ ସ୍କୁଲକୁ ଆବେଦନ, ବିବାହ ଓ ସରସ୍ୱତୀ ପୂଜା ଆଦିରେ ଯୋଗଦେବା ପାଇଁ ନିମନ୍ତ୍ରଣ ପତ୍ର, ଚନ୍ଦ୍ର ପୂର୍ଣ୍ଣିମୀ, ଶିଶୁକୁ ଗୋଟିଏ ଗଳ୍ପ, ଗ୍ରାମର ମନ୍ଦିର, ସ୍ଥାନୀୟ ବିଶିଷ୍ଟ କିମ୍ବଦନ୍ତୀ ଇତ୍ୟାଦି ।



## ବ୍ୟାକରଣ

ସପ୍ତାହରେ ୧ ପାଠ ମୋଟ ୩୨ ସପ୍ତାହରେ ୩୨ ପାଠ

## ଜୁନ ୧ ସପ୍ତାହ— ୧ ପାଠ

୧ । ଶବ୍ଦ ପଦ ଓ ବାକ୍ୟର ପରିଚୟ ।

## ଜୁଲାଇ ୪ ସପ୍ତାହ— ୪ ପାଠ

୧ । ବାକ୍ୟରୁ ଉଦ୍ଦେଶ୍ୟ ଓ ବିଧେୟ ବା କର୍ତ୍ତା କ୍ରିୟା ବାଛିବା ।
୨ । ଉକ୍ତ ୧ମ ପାଠର କାର୍ଯ୍ୟ ।
୩ । ପଦର ପ୍ରକାର ଭେଦ ଓ ବିଶେଷ୍ୟ ପଦ ପରିଚୟ ।
୪ । ଉକ୍ତ ୩ୟ ପାଠର କାର୍ଯ୍ୟ ।

## ଅଗଷ୍ଟ ୪ ସପ୍ତାହ— ୪ ପାଠ

୧ । ବିଶେଷ୍ୟର ପ୍ରକାର ଭେଦ ଓ ପରିଚୟ ।
୩ । ବିଶେଷ୍ୟର ଲିଙ୍ଗ ।

୩ । ବିଶେଷ୍ୟର ବଚନ ଓ ପୁରୁଷ ।
୪ ଉକ୍ତ ୩ଟି ପାଠର ପୁନରାଲୋଚନା ।

## ସେପ୍ଟେମ୍ବର ୪ ସପ୍ତାହ—୪ ପାଠ

୧ । ବିଶେଷ୍ୟ ପଦର ବିଭକ୍ତିର ପରିଚୟ ।
୨ । ପଦଗୁଡ଼ିକର ବିଭକ୍ତି ରୂପ ।
୩ । ବିଶେଷ୍ୟ ପଦକୁ ୭ ବିଭକ୍ତି ଓ ଦୁଇବଚନ ରୂପରେ ବଦଳାଇବା ।
୪ । ପୁନରାଲୋଚନା ଓ ୧ମ ପରୀକ୍ଷା ଗ୍ରହଣ ।

## ଅକ୍ଟୋବର ୩ ସପ୍ତାହ— ୩ ପାଠ

୧ । ବିଶେଷ୍ୟର କାରକ ।
୨ । ଉକ୍ତ ୧ମ ପାଠର କାର୍ଯ୍ୟ ।
୩ । କାରକ ସହିତ ବିଭକ୍ତିର ସମ୍ପର୍କ ।

## ନଭେମ୍ବର ୪ ସପ୍ତାହ— ୪ ପାଠ

୧ । ସର୍ବନାମ ପଦ ପରିଚୟ ।
୨ । ,, ଲିଙ୍ଗ ବଚନ ଓ ପୁରୁଷ ।
୩ । ,, ବିଭକ୍ତି ଓ କାରକ ।
୪ । ,, ଶବ୍ଦରୂପ ।

## ଡିସେମ୍ବର ୩ ସପ୍ତାହ— ୩ ପାଠ

୧ । ବିଶେଷଣ ପଦ ପରିଚୟ ଓ ତାର ବାକ୍ୟ ମଧ୍ୟରେ କାର୍ଯ୍ୟ ।
୨ । ବିଶେଷଣର ପ୍ରକାର ଭେଦ ଓ ଉଦାହରଣ ।
୩ । ଅବ୍ୟୟ ପଦ ପରିଚୟ ଓ ଅବ୍ୟୟ ପଦର ବାକ୍ୟ ମଧ୍ୟରେ କାର୍ଯ୍ୟ ।

## ଜାନୁଆରୀ ୪ ସପ୍ତାହ ୪ ପାଠ

୧ । କ୍ରିୟାପଦ ପରିଚୟ ବାକ୍ୟ ମଧ୍ୟରେ କ୍ରିୟାର କାର୍ଯ୍ୟ ।
୨ । କ୍ରିୟା ସହିତ କାରକର ସମ୍ପର୍କ ସ୍ଥାପନ ।
୩ । ସକର୍ମକ ଅକର୍ମକ ସମାପିକା ଓ ଅସମାପିକା କ୍ରିୟା ।
୪ । ପୁନରାଲୋଚନା ଓ ୨ୟ ପରୀକ୍ଷା ଗ୍ରହଣ ।

## ଫେବୃୟାରି ୪ ସପ୍ତାହ— ୪ ପାଠ

୧ । କ୍ରିୟାର କାଳ ।
୨ । ପୁରୁଷ ବଚନ ଓ କାଳ ଭେଦରେ କ୍ରିୟାର ରୂପ ।

୩ । କର୍ତ୍ତା ସହିତ କ୍ରିୟାର ଓ କ୍ରିୟା ସହିତ କର୍ତ୍ତାର ସମ୍ପର୍କ ।
୪ । ବାକ୍ୟରୁ କର୍ତ୍ତା ଓ କ୍ରିୟା ବାଛିବା ।

## ମାର୍ଚ୍ଚ ୩ ସପ୍ତାହ —୩ ପାଠ

୧ । ପଦାନ୍ୱୟ ।
୨ । ପଦାନ୍ୱୟ ।
୩ । ପଦାନ୍ୱୟ ।

**ନୋଟ:**—ବିଭିନ୍ନ ବାକ୍ୟ ସାହାଯ୍ୟ ନେଇ ବିଭିନ୍ନ ପଦ ଗୁଡ଼ିକର ପଦାନ୍ୱୟ କରିବାକୁ ଦିଆଯିବ ।

## ଅପ୍ରେଲ ୩ ସପ୍ତାହ—୩ ପାଠ

୧ରୁ ୩ । ପରୀକ୍ଷା ପାଇଁ ପ୍ରସ୍ତୁତି ।

**ସୂଚନା:**—ବ୍ୟାକରଣ ପାଠଦାନ ବେଳେ କ୍ଷୁଦ୍ର କ୍ଷୁଦ୍ର ବାକ୍ୟର ଅଧିକ ବ୍ୟବହାର କରାହେବ । ପିଲାମାନେ ବାକ୍ୟ ମଧ୍ୟରୁ ବାଛି ବିଭିନ୍ନ ପଦ ଚିହ୍ନିବେ, ପ୍ରତ୍ୟେକ ପଦ ସହିତ ପ୍ରତ୍ୟେକ ପଦର କିପରି ସମ୍ପର୍କ ରହିଛି ତାହା ଲକ୍ଷ୍ୟ କରାଯିବ ଏବଂ ସଂଜ୍ଞା ଗୁଡ଼ିକ ନିଜେ ହୃଦୟଙ୍ଗମ କରି ନିଜ ଭାଷାରେ କହିବେ । ଏ ନିମନ୍ତେ ନୋଟ ଖାତା ବ୍ୟବହୃତ ହେବ ଏବଂ ଏହା ନିୟମିତ ସଂଶୋଧିତ ହେଉଥିବ । ବ୍ୟାକରଣ ଭଳି ନୀରସ ପାଠକୁ ସରସ କରିବା ନିମନ୍ତେ ବ୍ୟାକରଣ ଶିକ୍ଷକ ବିଭିନ୍ନ କ୍ଷୁଦ୍ର କ୍ଷୁଦ୍ର ଗଳ୍ପ କହି ପିଲାମାନଙ୍କର ମନକୁ ଏ ଶିକ୍ଷା ପ୍ରତି ଆକୃଷ୍ଟ କରାଇବେ । ଶିକ୍ଷା ଯେତେ ଉଦାହରଣ ବହୁଳ ହେବ ସେତେ ଫଳ

# ପଦ୍ୟାବୃତ୍ତି ଓ ସମ୍ବାଦ ପତ୍ର ପାଠ

ଏ ନିମନ୍ତେ ସପ୍ତାହରେ ଗୋଟିଏ ପାଠ ନିର୍ଦ୍ଦିଷ୍ଟ ଅଛି । ବର୍ଷରେ ମୋଟ ୪୦ ପାଠ

ସ୍କୁଲକୁ ବିଶେଷତଃ ଉ: ପ୍ରା: ସ୍କୁଲକୁ ନିଶ୍ଚିତ୍ତ ଖଣ୍ଡିଏ ଦୈନିକ ଖବର କାଗଜ ଅଣାଯିବ । ଏଥିରୁ ଦୈନିକ ବିଶିଷ୍ଟ ଖବର ସମ୍ବାଦ ସରବରାହର ଅନ୍ତର୍ଗତ ହେବ । ଏ ନିମନ୍ତେ ପ୍ରଥମ ୩୦ ମିନିଟ୍ ମଧ୍ୟରେ ସମୟ ଧାର୍ଯ୍ୟ ଅଛି ।

ଏହି ସମ୍ବାଦ ପତ୍ରରୁ ଉପାଦେୟ ଗୋଟିଏ ଗୋଟିଏ ଅନୁଚ୍ଛେଦ ଶିକ୍ଷକ ଧାର୍ଯ୍ୟ କରିବେ । ପିଲାମାନେ ତାହା ପଢ଼ିବେ । ଆବଶ୍ୟକ ପଡ଼ିଲେ ସେ ଅନୁଚ୍ଛେଦଟି ଶ୍ରେଣୀରେ ଆଲୋଚିତ ହେବ । ଶିକ୍ଷକ ଖବର କାଗଜ ପଢ଼ିଲେ ଉପାଦେୟ ଅନୁଚ୍ଛେଦ ବାଛିବାରେ କୌଣସି ଅସୁବିଧା ହେବ ନାହିଁ । ଏ ନିମନ୍ତେ ପୂର୍ବରୁ ପାଠ୍ୟ ଯୋଜନା ପ୍ରସ୍ତୁତିର ଆବଶ୍ୟକତା ରହୁନାହିଁ ।

ଆଉ ୨୦ ସପ୍ତାହ ପଦ୍ୟ ଆବୃତ୍ତିରେ ବ୍ୟୟିତ ହେବ । ଏଥିନିମନ୍ତେ ବନ୍ଦରୁ ଜାତୀୟତା ବୋଧ ପଦ୍ୟ, ଅନ୍ୟ ଦେଶାତ୍ମବୋଧ ଗୀତ, ଆମ ଜାତୀୟ ସଙ୍ଗୀତ ସ୍ଥାନ ପାଇବ । ଶିକ୍ଷକ ଗାୟକ ହୋଇଥିଲେ ଏ ସବୁ

ବାଛିବାରେ କୌଣସି ଅସୁବିଧା ଘଟିବ ନାହିଁ । ଏଥିପାଇଁ ୧୨ ମ ସରେ ୧୨ଟିମାତ୍ର ପଦ୍ୟ ଶିକ୍ଷା ଦେବା ଉଚିତ । ବେତାର କେନ୍ଦ୍ର ଜରିଆରେ ପ୍ରସ୍ତୁତ ଦେଶାତ୍ମବୋଧ ଗୀତ ସଂଗୃହୀତ ହୋଇପାରେ । ଗୀତ ବୋଲିବାରେ ଶିକ୍ଷକଙ୍କର ଦକ୍ଷତା ନଥିଲେ ସେ ଏ ବିଷୟରେ ଦକ୍ଷତା ଥିବା କୌଣସି ବ୍ୟକ୍ତିଙ୍କ ସାହାଯ୍ୟ ନେବେ । କୌଣସି ମତେ ଏ ପାଠକୁ ଉପେକ୍ଷା କରିବା ଉଚିତ ନୁହଁ । ଏହା ପିଲମାନଙ୍କ ମନରେ ଅତ୍ୟନ୍ତ ଉତ୍ସାହ ପ୍ରଦାନ କରିଥାଏ ।



# ଶ୍ରୁ ତ ଲି ଖ ନ

ସପ୍ତାହରେ ୧ ପାଠ ମୋଟ—୩୭ ପିରିୟଡରେ ୩୭ ପାଠ

**ସୂଚନା:**—ଶୁଦ୍ଧ ଭାଷାରେ ପଦ ପୃଥକ୍ କରି ଶୁଣି ଶୁଣି ଲେଖିବା ଶ୍ରୁତଲିଖନର ଉଦ୍ଦେଶ୍ୟ । ଏହାଦ୍ୱାରା ପିଲମାନଙ୍କର ଅଧିକ ଏକାଗ୍ରତା ଆସେ । ଏ ନିମନ୍ତେ ଶିକ୍ଷକ ପିଲମାନଙ୍କ ମନକୁ ନିଜ ଆଡ଼କୁ ଟାଣିବା ପାଇଁ ନିଜର ପଠନ ସ୍ୱର, ଶୁଦ୍ଧ ଉଚ୍ଚାରଣ ସୁସ୍ପଷ୍ଟ ଭାଷା ପ୍ରତି ଅଧିକ ଦୃଷ୍ଟି ଦେବେ । ଶ୍ରୁତଲିଖନ ଦୁଇ ପ୍ରକାର — ପ୍ରଥମ ଶ୍ରୁତଲିଖନ ଶିକ୍ଷା । ଦ୍ୱିତୀୟ—ଶ୍ରୁତଲିଖନ ପରୀକ୍ଷା । ଏ ପାଠ୍ୟ ଖସଡ଼ା ପରୀକ୍ଷା ପାଇଁ ଉଦ୍ଦିଷ୍ଟ ନୁହେଁ ଏହା ଶିକ୍ଷା । ଶିକ୍ଷକ ଶିକ୍ଷା ଦେଇ ଦେଇ ପିଲମାନଙ୍କୁ ଲେଖାଇବାରେ ଅଭ୍ୟସ୍ତ କରାଇବେ ଏହାହିଁ ଏହାର ଉଦ୍ଦେଶ୍ୟ । ଅନୁଚ୍ଛେଦ ମଧ୍ୟରେ ଥିବା ଯୁକ୍ତାକ୍ଷର ଗୁଡ଼ିକ ଯଥା ସମ୍ଭବ ବନାନ କରିବାକୁ ଭୁଲିବେ ନାହିଁ ।

## ଜୁନ ୧ ସପ୍ତାହ—୧ ପାଠ

୧ । ସାହିତ୍ୟ ବହିର ୭୨ ପୃଷ୍ଠାରେ ଥିବା ଅନୁଚ୍ଛେଦ ଯଥା:—ପୁଣି ବୈଜ୍ଞାନିକମାନେ······ ······ନଆଁ ଜଳିବ ନାହିଁ ।

## ଜୁଲାଇ ୪ ସପ୍ତାହ—୪ ପାଠ

୧ । ଅନନ୍ତର ଯଜ୍ଞ କ୍ରିୟା ଅନୁଷ୍ଠିତ ହୋଇଛି । ଶ୍ରୀକୃଷ୍ଣ ସେଥିରେ ଜଣେ ଆଗ୍ରହୀ ଦର୍ଶକ । ଯଜ୍ଞ ସମାପ୍ତି ପରେ ଯଜ୍ଞୀୟ ଅର୍ଘ୍ୟର ଗ୍ରହୀତା କିଏ ହେବ ଏ ପ୍ରଶ୍ନ ପୁରୋହିତଙ୍କ ଦ୍ୱାରା ଉତ୍ଥାପିତ ହେବା ପରେ ବୃଦ୍ଧ ଭୀଷ୍ମଦେବ ଶ୍ରୀକୃଷ୍ଣଙ୍କର ପ୍ରଶସ୍ତି ଗାନ କଲେ । ସ୍ଥିତପ୍ରଜ୍ଞ ଓ ସ୍ଥିରବୁଦ୍ଧିର ଯେଉଁ ସଂଜ୍ଞା ଗୀତାରେ ପ୍ରଦର୍ଶିତ ହୋଇଛି ତାହାହିଁ ଏ ପ୍ରଶସ୍ତିର ପ୍ରଧାନ ଅଙ୍ଗ । ଏଥିରେ କ୍ରୂରକର୍ମା ଶିଶୁପାଳ ମର୍ମାହତ ହେଲା ।

୨ । ସାହିତ୍ୟ ବହି ୭୮ ପୃଷ୍ଠାର ଏକ ଅନୁଚ୍ଛେଦ ସ୍ୱାସ୍ଥ୍ୟ ସରକାର·····ବାଛିନେଲେ ।

୩ । ସାମାଜିକ ପାଠ— ୭୭ ପୃଷ୍ଠାର-ଭାରତ ଇତିହାସର ସୁବର୍ଣ୍ଣ ଯୁଗ··········· ରାଜତ୍ୱ କରିଥିଲେ ।

୪ । ଇନ୍ଦ୍ରପ୍ରସ୍ଥକୁ ଯାତ୍ରାକାଳରେ ଶ୍ରୀକୃଷ୍ଣ ପ୍ରକୃତି ପ୍ରେମୀ କବି-ତୁଲ୍ୟ ରୈବତ ପର୍ବତର ପ୍ରାକୃତିକ ସୌନ୍ଦର୍ଯ୍ୟ, ତଦ୍‌ସଂଲଗ୍ନ ବିଭିନ୍ନ ଋତୁର ଅତୁଳ ସୁଷମା, ସୂର୍ଯ୍ୟୋଦୟକାଳୀନ ପ୍ରକୃତିର ବିଚିତ୍ର ବେଶ, ରାତ୍ରି ଆଗମନରେ ଚନ୍ଦ୍ରୋଦୟର ଅସାଧାରଣ ଦୃଶ୍ୟ ଏବଂ ପଲ୍ଲୀବାସୀଙ୍କ ସରଳ ଜୀବନ ଯାତ୍ରା ସନ୍ଦର୍ଶନ କରି ମୁଗ୍ଧ ହୋଇ ଅଛନ୍ତି । ଏ ଗୁଡ଼ିକ ବର୍ଣ୍ଣନାରେ କବି ନିଜର ଅତୁଳନୀୟ ବାଗ୍ମିତା ପ୍ରଦର୍ଶନ କରିଥିବାର ପ୍ରମାଣ ମିଳେ ।

## ଅଗଷ୍ଟ ୪ ସପ୍ତାହ— ୪ ପାଠ

୧ । ସାହିତ୍ୟ ବିହ୍ବ··· ୩୪ ପୃଷ୍ଠା ।
ଗାନ୍ଧୀଜୀଙ୍କ ମୃତ୍ୟୁପରେ ····· ବେତାରବାଣୀ ଶୁଣାଇଲେ ।

୨ । ସମ୍ବାଦ ପତ୍ରର ଏକ ଅନୁଚ୍ଛେଦ ବାଛନ୍ତୁ ।

୩ । ଜଗନ୍ନାଥ, ସୁଶୀଳ, ଚିକିତ୍ସାଶାସ୍ତ୍ର, ଆକାଂକ୍ଷା, ଶବ୍ଦୋପୂଜା, ବିଦ୍ୟୁଲ୍ଲତା, ବିକାଶୋନ୍ମୁଖୀ ଉଦ୍‌ଗ୍ରୀବ, ନିମନ୍ତ୍ରଣ, ସ୍ୱର୍ଗ, ବିସ୍ମୟଦୃଷ୍ଟି, ଉଜ୍ଜୀବିତ, ମୀମାଂସା, ଡ୍ରେଣ୍ଟର, ସ୍ୱାସ୍ଥ୍ୟରକ୍ଷା ପାଲିଆମେଣ୍ଟ, ବୈଦ୍ୟୁତିକ, ପ୍ଲାଷ୍ଟିକ, ଇନ୍ଦ୍ରଦ୍ୟୁମ୍ନ, ଜଗନ୍ନାଥ ।

୪ । ଏଥିରୁ ସ୍ପଷ୍ଟଭାବରେ ଜଣାପଡୁଛି ଯେ, ବର୍ତ୍ତମାନ ଆମ ଦେଶରେ ସମାଜବାଦ ଓ ପୁଞ୍ଜିବାଦ ମଧ୍ୟରେ ତୀବ୍ର ପ୍ରତିଯୋଗିତା ଚାଲିଅଛି । କାରଣ ଉଭୟବାଦ ମଧ୍ୟରେ କେବଳ ଯେ ନୀତିଗତ ଅସାମଞ୍ଜସ୍ୟ ରହିଛି କେବଳ ସେତିକି ନୁହେଁ, ଉଭୟେ ସମ୍ପୂର୍ଣ୍ଣ ବିପରୀତ ମୁଖୀ । ଉଭୟବାଦ ମଧ୍ୟରେ କେବଳ ପ୍ରତିଯୋଗିତା ନୁହେଁ, ପ୍ରବଳ ସଂଘର୍ଷ ମଧ୍ୟ ଚାଲିଛି । ଏ ସଂଘର୍ଷର ପ୍ରତିକ୍ରିୟା ସରକାର ତଥା ଜନ ସାଧାରଣଙ୍କୁ ବିଚଳିତ କରୁଅଛି ।

## ସେପ୍ଟେମ୍ବର ୪ ସପ୍ତାହ—୪ ପାଠ

୧ । ସାମାଜିକ ପାଠ ··୧୯୮ ପୃଷ୍ଠା ।
ରାଜ୍ୟ ବିଧାନ ସଭାର— ବର୍ତ୍ତିଭ କର କାମ କରନ୍ତି ।

୨ । ସାହିତ୍ୟ ବିହ୍ବ··· ୫୦ ପୃଷ୍ଠା ।
ଚିକ୍କଣ ଓ ଚଉଡ଼ା— ଘଟି ନଥାଏ ।

୩ । ଅନୁନ୍ନତ ଓ ଉନ୍ନତ ଅର୍ଥନୀତି ମଧ୍ୟରେ ଅନ୍ୟ ଏକ ପ୍ରଭେଦ ହେଉଛି ଜନସଂଖ୍ୟା ବୃଦ୍ଧି । ପୃଥିବୀର ଜନସଂଖ୍ୟା ବୃଦ୍ଧି ହାର ଶତକଡ଼ା ଦୁଇ କିନ୍ତୁ ଅନୁନ୍ନତ ଅର୍ଥନୀତିରେ ଏ ସଂଖ୍ୟା ଶତକଡ଼ା ଅଢ଼େଇ । ଭାରତରେ ଏହି ବୃଦ୍ଧି ହାର ଦେଖା ଯାଇଥାଏ । ପୃଥିବୀର ମୋଟ ଜନସଂଖ୍ୟା ୩୦୦ କୋଟି । ଏ ମଧ୍ୟରୁ କେବଳ ଭାରତ ଓ ଚୀନ୍‌ର ଲୋକସଂଖ୍ୟା ୧୧୦ କୋଟି । ଏହା ପୃଥିବୀ ଲୋକସଂଖ୍ୟାର ଏକ ତୃତୀୟାଂଶରୁ ଅଧିକ ।

୪ । ପୁନରାଲୋଚନା ଓ ପ୍ରଥମ ପରୀକ୍ଷା ଗ୍ରହଣ ।

## ଅକ୍ଟୋବର ୩ ସପ୍ତାହ— ୩ ପାଠ

୧ । ବିଜ୍ଞାନ ପାଠ— ୭୦ ପୃଷ୍ଠା ।
ତୁମେ ଜାଣିଲ— ଦର୍ପଣ ଉପରେ ପଡେ ।

୨ । ବୈଦିକ ଶାସନ ପଦ୍ଧତି ଐତରେୟ ବ୍ରାହ୍ମଣର ଐନ୍ଦ୍ର ମହାଭିଷେକର ଏକ ଅଧ୍ୟାୟରୁ ଯାହା ମିଳୁଅଛି ତାହା ପରବର୍ତ୍ତୀ କାଳରେ ରାଜନୀତି ଶାସ୍ତ୍ର ଗ୍ରନ୍ଥରୁ ଏବଂ ରାଜାମାନଙ୍କ ଶିଳା ଲେଖରୁ ମଧ୍ୟ ଦେଖିବାକୁ ମିଳୁଛି । ଏହି ଐତରେୟ ଶାସନ ପଦ୍ଧତି ଯାଦବ-ମାନଙ୍କ ସମୟରେ ପ୍ରଚଳିତ ଥିଲା । ଏହାର ସାରତତ୍ତ୍ୱ ଗଣତନ୍ତ୍ର ଶାସନ ପଦ୍ଧତି । ତାହାହିଁ ବର୍ତ୍ତମାନ ଆମ ସ୍ୱାଧୀନ ଭାରତ ଶାସନରେ ଗୃହୀତ ହୋଇଅଛି ।

୩ । ସାହିତ୍ୟ ବନ୍ଧୁ— ୯୪ ପୃଷ୍ଠା ।
ଏହି ସମୟରେ — ଆଲୋଚନା କଲେ ।

## ନଭେମ୍ବର ୪ ସପ୍ତାହ— ୪ ପାଠ

୧ । ଦୃଷ୍ଟାନ୍ତ, ଆର୍ଯ୍ୟ, ରାଷ୍ଟ୍ର, ସଂସ୍କୃତି, ସାର୍ଟିଫିକେଟ୍, ସବ୍ଇନସ୍ପେକ୍ଟର, ମ୍ୟୁନିସିପାଲିଟି, ସିଗ୍ଧ, ସନ୍ତାନ, ଦୁର୍ନୀତି, ସ୍ବର୍ଣ୍ଣ, ଷ୍କୁଟର, ଟେଲିସ୍କୋପ, ଥର୍ମୋମିଟର, ବର୍ଣ୍ଣାଳୀ, ପ୍ରତିଷ୍ଠାପକତା, କଦ୍ଧ୍ୱାଲ, ମାଗ୍ନେଟ୍, ଉଦ୍ଧ୍ୱ, ତପସ୍ୱୀ ।

୨ । ସାହିତ୍ୟ ବନ୍ଧୁ— ୯୯ ପୃଷ୍ଠା ।
ଲବଣାକ୍ତ ଜଳ······ଘୋଡ଼ାଇ ପକାଇବ ।

୩ । ସାମାଜିକ ପାଠ — ୧୩୭ ପୃଷ୍ଠା ।
ପୃଥ୍ୱୀ କଲର······ସାହାଯ୍ୟ କରୁଅଛି ।

୪ । ଭାରତୀୟ କଂଗ୍ରେସ ଭୁବନେଶ୍ୱରର ଅଧିବେଶନରେ, ଦେଶକୁ ସମାଜବାଦ ପ୍ରଣାଳୀରେ ନିୟନ୍ତ୍ରିତ କରିବାକୁ ପ୍ରସ୍ତାବ କରିଛି । ଏହା ଏକ ସାଧୁ ଘୋଷଣା ; ମାତ୍ର କଂଗ୍ରେସ ସରକାର ଏଥିରେ କେତେଦୂର ସଫଳକାମ ହେବେ ତାହାହିଁ ବିଚାର୍ଯ୍ୟ । ବର୍ତ୍ତମାନ ଦେଶରେ ଯେଉଁ ଦୁର୍ନୀତି ପ୍ରବେଶ କରି ଦେଶବାସୀଙ୍କର ଶିରପ୍ରଶିରା ଭେଦ କରିଅଛି, ସେଥିରେ କୌଣସି ସରକାର ନିଜକୁ ସମାଜବାଦ ଗଢ଼ରେ ଗଢ଼ିବା ସମ୍ଭବପର ନୁହେଁ । ଦୁର୍ନୀତିକୁ ଲୋପ କରିବା ପାଇଁ ତାହାର ସଂଜ୍ଞାକୁ ଭାରତ ଦେଶରୁ ବିତାଡ଼ିତ କରିବା ପାଇଁ ଦେଶର ଶିକ୍ଷାବିତ୍ କି ବିଜ୍ଞ ଲୋକେ ବଦ୍ଧ ପରିକର ହେଲେ ସମାଜବାଦ ଗଣତନ୍ତ୍ରର ନୂତନ ଜନ୍ମ ଲାଭ ହେବ । ତା ପରେ ଦେଶର ଉନ୍ନତି ଅବଶ୍ୟମ୍ଭାବୀ ।

## ଡିସେମ୍ବର ୩ ସପ୍ତାହ— ୩ ପାଠ

୧ । ବିଜ୍ଞାନ ପାଠ— ୪୧ ପୃଷ୍ଠା ରାତିରେ ଆକାଶରେ— ନିର୍ଦ୍ଦେଶ କରି ଝୁଲି ରହିବ ।

୨ । ଏ ସମ୍ବାଦ ଶ୍ରବଣ କରି ଯୁଧିଷ୍ଠିର ଅତ୍ୟନ୍ତ ବ୍ୟଥିତ ହୋଇ ପଡ଼ିଲେ ଏବଂ କହିଲେ, ଭୀମସେନ ! ଅତିଶୀଘ୍ର ଏହାର ଉପାୟ ଚିନ୍ତା କର । ପ୍ରତିହିଂସା ପ୍ରିୟ

ବିକ୍ଷିପ୍ତ ପାଣ୍ଡବ ଭୀମସେନ ଉତ୍ତର ଦେଲେ, ଦେବ ! ଦୁର୍ଯ୍ୟୋଧନ ନିଜ ଦୁର୍ବୁଦ୍ଧିରୁ ଉପଯୁକ୍ତ ଶାସ୍ତି ପାଇଅଛି । ସେଥିରେ ଆମର ଆନନ୍ଦ ଉପଲବ୍ଧି କରିବାର କଥା । ବହୁ ଶ୍ରମ ଓ କଷ୍ଟ ସ୍ୱୀକାର କରି ଆମେ ଯେଉଁ କାର୍ଯ୍ୟ ସମାଧାନ କରି ଥାଆନ୍ତେ ତାହା ଆଜି ଗନ୍ଧର୍ବସେନଙ୍କ ଦ୍ୱାରା ସମ୍ପାଦିତ ହୋଇଅଛି ।" ଭ୍ରାତୃବତ୍ସଳ ଯୁଧିଷ୍ଠିର ଉତ୍ତର କଲେ, "ଗୃହ ବିବାଦରେ ଦୁର୍ଯ୍ୟୋଧନ ଆମର ଶତ୍ରୁ ହୋଇପାରେ, କିନ୍ତୁ ବହିଃଶତ୍ରୁ ଆକ୍ରମଣରେ ଆମେ ପଞ୍ଚୋତ୍ତର ଶତ ଭ୍ରାତା ଏକ ଓ ଅଭିନ୍ନ ।

୩ । ସାହିତ୍ୟ ବିଚିତ୍ରା — ୧୧ ପୃଷ୍ଠା—ହଜାର ହଜାର··· ପୃଥିବୀ ସୃଷ୍ଟି କରିଛି ।

## ଜାନୁଆରୀ ୪ ସପ୍ତାହ -- ୪ ପାଠ

୧ । ଏହି ପ୍ରାଚୀନ କ୍ରୀଡ଼ା ସଂଗଠନ କେବଳ ଗ୍ରୀସ୍ର ଅଲିମ୍ପିଆରେ ଅନୁଷ୍ଠିତ ହେଉଥିଲା । ପ୍ରାୟ ଏକହଜାର ବର୍ଷରୁ ଊର୍ଦ୍ଧ୍ୱକାଳ ପରିଚାଳିତ ହେବା ପରେ ଏହି ସଙ୍ଗଠନ ୪ର୍ଥ ଶତାବ୍ଦୀରେ ବିଲୁପ୍ତ ହୋଇଥିଲା କିନ୍ତୁ ଇତିହାସର ଗତି ବିଚିତ୍ର । ଦେଢ଼ ହଜାର ବର୍ଷ ଅତୀତ ହେବା ପରେ ପୁଣି ୧୮୯୬ ଖ୍ରୀଷ୍ଟାବ୍ଦରେ ସଂପୂର୍ଣ୍ଣ ନବଜୀବନ ଲାଭ କରି ପୃଥିବୀ ସମକ୍ଷରେ ଦେଖା ଦେଇଛି ଏହି ଅଲିମ୍ପିକ କ୍ରୀଡ଼ା ପ୍ରତିଯୋଗିତା ।

୨ । ସାମାଜିକ ପାଠ—୨ ପୃଷ୍ଠା ମହାଦେଶଗୁଡ଼ିକ ମଧ୍ୟରେ··· ଆମେରିକା ଦେଶ ।

୩ । ସମ୍ବାଦ ପତ୍ରରୁ ଏକ ଅନୁଚ୍ଛେଦ ।

୪ । ପୁନରାଲୋଚନା ଓ ମାସିକ ପରୀକ୍ଷା ଗ୍ରହଣ ।

## ଫେବୃଆରୀ ୪ ସପ୍ତାହ – ୪ ପାଠ

୧ । ସାହିତ୍ୟ ବିଚିତ୍ରା—୯୦ ପୃଷ୍ଠା
କର୍ତ୍ତବ୍ୟ ନିଷ୍ଠା ----- ମନାନ୍ତର ହେଉ ନଥିଲା ।

୨ । ଶିଳ୍ପ ମୁଖ୍ୟତଃ ଯନ୍ତ୍ରଶିଳ୍ପ ଓ କୁଟୀର ଶିଳ୍ପ ନାମରେ ବିଦିତ । ସାଇକେଲ୍, ସିମେଣ୍ଟ, କାଗଜ, ଲୁଗାପଟା ବିଭିନ୍ନ କଳକବ୍ଜା ଓ ଲୌହ ନିର୍ମିତ ବୃହତ୍ ସରଞ୍ଜାମ ଗୁଡ଼ିକର ଉତ୍ପାଦନ ଯନ୍ତ୍ର ଶିଳ୍ପର ଅନ୍ତର୍ଗତ । କୌଣସି ସ୍ଥାନରେ ଏପରି ଯନ୍ତ୍ର ଶିଳ୍ପ ପ୍ରତିଷ୍ଠା କରିବା ପୂର୍ବରୁ କେତେଗୁଡ଼ିଏ ବିଷୟ ପ୍ରତି ଦୃଷ୍ଟି ଦେବାକୁ ହୁଏ । ବହୁ ପରିମାଣରେ କଞ୍ଚାମାଲ କୋଇଲା ଓ ବିଦ୍ୟୁତ୍ ଶକ୍ତି ମିଳୁଥିବା ସ୍ଥାନ ଏଥିପାଇଁ ଉତ୍କୃଷ୍ଟ ବୋଲି ବିବେଚିତ ହୁଏ ।

୩ । ସମ୍ବାଦ ପତ୍ରରୁ ଏକ ଅନୁଚ୍ଛେଦ ।

୪ । ଉତ୍କଳର ପ୍ରକୃତି କି ସୁନ୍ଦର ଓ ଚିତ୍ତାକର୍ଷକ, କି ବିରାଟ ଓ କି ବିଚିତ୍ର ସେ । କେଉଁଠି ଶାନ୍ତ, କେଉଁଠି କ୍ଳାନ୍ତ କେଉଁଠି ରୁଦ୍ର ଏବଂ କେଉଁଠି ଗମ୍ଭୀର । ଉପକୂଳ ଅଞ୍ଚଳର ବିସ୍ତୀର୍ଣ୍ଣ ପ୍ରାନ୍ତରମାନଙ୍କରେ ପ୍ରକୃତି ହସୁଛି ଶସ୍ୟ ଶ୍ୟାମଳ ହୋଇ ଏବଂ ନଦୀ ନାଳ, ଘାଟ ପୋଖରୀ ଓ ଅସଂଖ୍ୟ ଜଳଭଣ୍ଡାରରେ ସେ ଛିଡ଼ାହୋଇଛି ଜୀବ ଜଗତର କଲ୍ୟାଣ ସାଧନ କରିବାକୁ ।

**ମାର୍ଚ୍ଚ ଓ ଅପ୍ରେଲ** ଏ ଦୁଇମାସ ବାର୍ଷିକ ପରୀକ୍ଷା ନିମନ୍ତେ ପିଲାମାନଙ୍କୁ ପ୍ରସ୍ତୁତ କରିବାକୁ ହେଉଥିବାରୁ ଏ ପରିଅଡ଼ ମାନଙ୍କରେ ସାହିତ୍ୟର ସରଳାର୍ଥ ପ୍ରଶ୍ନ ଉତ୍ତର ଆଦିର ଆଲୋଚନା କରାଯିବ ଏବଂ ସଂଶୋଧିତ ହେବ ।

# ଗଣିତ

ସପ୍ତାହରେ ୬ ପାଠ—ମୋଟ ୩୭ ସପ୍ତାହରେ ୨୨୨ ପାଠ

## ଜୁନ ୧ ସପ୍ତାହ—୬ ପାଠ

୧ ଓ ୨ । ପୂର୍ବ ପାଠର ଆଲୋଚନା, ଅଧ୍ୟାୟ 'କ' ପ୍ରଶ୍ନମାଳା ଆଲୋଚନା । ପ୍ରତି ପାଠରେ ୫ ନମ୍ବର ।

୩ ଓ ୪ । ଉକ୍ତ ଅଧ୍ୟାୟ 'ଖ' ପ୍ରଶ୍ନମାଳା—ପ୍ରତି ପାଠରେ ୫ ନମ୍ବର ।

୫ ଓ ୬ । ଉକ୍ତ ଅଧ୍ୟାୟ 'ଖ' ପ୍ରଶ୍ନମାଳା; ପ୍ରତି ପାଠରେ ୫ ନମ୍ବର ।

**ସୂଚନା:**—ସମଜାତୀୟ ପ୍ରଶ୍ନ ବାଛି ଆଲୋଚନା କରାଯିବ । ଘର କାମ ଦିଆଯିବ । ସୂତ୍ରଗୁଡ଼ିକ ପିଲାମାନଙ୍କ ମନରେ ପୂର୍ଣ୍ଣ ଧାରଣା ଦେବା ପାଇଁ ଆବଶ୍ୟକୀୟ ଉପକରଣର ନିଶ୍ଚୟ ବ୍ୟବହାର କରାଯିବ ।

## ଜୁଲାଇ ୪ ସପ୍ତାହ— ୨୪ ପାଠ

୧ ରୁ ୫ । ପୂର୍ବ ପାଠର ଆଲୋଚନା ଅଧ୍ୟାୟ 'ଘ' ଓ 'ଙ' ପ୍ରଶ୍ନମାଳା ଆଲୋଚନା ପ୍ରଥମ ପାଠରେ ୪ ନମ୍ବର, ଶେଷ ପାଠରେ ୬ ନମ୍ବର ।

୬ ଓ ୭ । ସରଳ ଐକିକ ଧାରା ମାନସାଙ୍କ 'କ'ରେ ଥିବା ପ୍ରଶ୍ନ ଆଲୋଚନା ।

୮ ଓ ୯ । ଐକିକ ଧାରା ଆଲୋଚନା ଏବଂ ଐକିକ ଧାରାର ପ୍ରଧାନ ନିୟମଗୁଡ଼ିକ ବିଷୟରେ ପିଲାମାନଙ୍କୁ ସ୍ପଷ୍ଟ ଧାରଣା ଦେବା । ଏ ନିୟମ ଗୁଡ଼ିକ ପାଇଁ ବହିର ୧୪ ପୃଷ୍ଠା ଦ୍ରଷ୍ଟବ୍ୟ ।

୧୦ । ମାନସାଙ୍କ 'ଖ'ରେ ଥିବା ପ୍ରଶ୍ନର ଆଲୋଚନା ।

୧୧ । ଲିଖିତାଙ୍କ 'କ' ପ୍ରଶ୍ନ ସମାଧାନ (୧୫ ପୃଷ୍ଠା) ।

୧୨ ଓ ୧୩ । ,, 'ଖ' ପ୍ରଶ୍ନ ସମାଧାନ ।

୧୪ ଓ ୧୫ । ,, 'ଗ' ପ୍ରଶ୍ନ ସମାଧାନ ।

୧୬ ଓ ୧୭ । ,, 'ଘ' ପ୍ରଶ୍ନ ସମାଧାନ । [ ୧୮ ପୃଷ୍ଠା ]

୧୮ ଓ ୧୯ । ଐକିକ ଧାରା [୨] ମାନସାଙ୍କ ଓ ବିଭିନ୍ନ ପ୍ରକାର ଐକିକ ଧାରା ଶିକ୍ଷା ।

୨୦ ରୁ ୨୪ । ଐକିକ ଧାରା ଲିଖିତାଙ୍କ ୨୦ ନମ୍ବର ପ୍ରତି ପାଠରେ ୪ ନମ୍ବର—
[ ୨୨, ୨୩, ୨୪ ଓ ୨୫ ପୃଷ୍ଠା ]

## ଅଗଷ୍ଟ ୪ ସପ୍ତାହ – ୨୪ ପାଠ

୧ । ଐକିକ ଧାରା (୩) ଆଲୋଚନା (ତୃତୀୟ ପ୍ରକାର ଐକିକଧାରାର ଆଲୋଚନା) ୨୬ ପୃଷ୍ଠା

୨ ରୁ ୬ । ଲିଖିତାଙ୍କ ପ୍ରଶ୍ନ ସମାଧାନ, ପ୍ରତି ପାଠରେ ୪ ନମ୍ବର ସମଜାତୀୟ ପ୍ରଶ୍ନ ବାଛିବାକୁ ହେବ । ଏ ଅଧ୍ୟାୟର ବିଭିନ୍ନ ନମ୍ବର ପ୍ରଶ୍ନ ଭୁଲ୍ ଅଛି । ଏହା ବାଦ୍ ଦିଆଯାଇ ପାରେ କିମ୍ବା ୨୪ଟି ଟ୍ରକ ଓ ୩୬ଟି ଟ୍ରକ ସ୍ଥାନରେ ୨୪ଟି ଟ୍ରକ୍ ବା ୩୬ଟି ଟ୍ରକ୍ ବୋଲି ପଢ଼ାଯିବ ।

୭ରୁ ୧୫ ପାଠ — ଐକିକ ଧାରା ସମ୍ପର୍କୀୟ ବିଭିନ୍ନ ପ୍ରଶ୍ନର ସମାଧାନ ବିଷୟ ଶିକ୍ଷକ ଏ ନିମନ୍ତେ ପ୍ରତି ପାଠରେ ଅନ୍ତତଃ ୩ ନମ୍ବର ପ୍ରଶ୍ନର ସମାଧାନ ଓ ଆଲୋଚନା କରିବେ ।

୧୬ରୁ ୨୪ ପାଠ — ସରଳ ସାଙ୍କେତିକ ଧାରା ସମ୍ପର୍କରେ ପ୍ରାଥମିକ ଧାରଣା ଓ ସମାଂଶର ଧାରଣା ସଙ୍ଗେ ସାଙ୍କେତିକ ଧାରା ଶିକ୍ଷା ।

## ସେପ୍ଟେମ୍ବର ୪ ସପ୍ତାହ ୨୪ ପାଠ

୧ । — ମାନସାଙ୍କ ୫ ନମ୍ବର ୩୮ ପୃଷ୍ଠା ।

୨ରୁ ୧୩ । — ଲିଖିତାଙ୍କ (୩୯ ପୃଷ୍ଠାର) ପ୍ରତିଦିନ ୨ ନମ୍ବର ଲେଖାଏଁ ।

ସୂଚନା:— ସମସ୍ତ ମିଳିଲେ ଶିକ୍ଷକ ଅଧିକ ପ୍ରଶ୍ନ ପ୍ରସ୍ତୁତ କରିବେ । ଘରକାମ ପାଇ ମଧ୍ୟ ପ୍ରଶ୍ନ ଦିଆଯିବ ।

୧୪ରୁ ୨୪ — ପୁନରାଲୋଚନା ଓ ୧ମ ପରୀକ୍ଷା ପାଇଁ ପ୍ରସ୍ତୁତି—

ସୂଚନା:— ଏ ପ୍ରସ୍ତୁତି ବେଳେ ପୂର୍ବ ମାଠର ଆଲୋଚନା ଅଧ୍ୟାୟ ଓ ଐକିକ ଧାରା ଅଧ୍ୟାୟର ବିଶେଷ ବିଶେଷ ସ୍ଥଳ ଆଲୋଚନା ପାଇଁ ନୂତନ ନୂତନ ପ୍ରଶ୍ନର ସମାଧାନ ଅନ୍ତତଃ ପ୍ରତି ପାଠରେ ୩ଟି ପ୍ରଶ୍ନ ଆବଶ୍ୟକ ।

## ଅକ୍ଟୋବର ୩ ସପ୍ତାହ ୧୮ ପାଠ

୧ରୁ ୩ ପାଠ — ସରଳ ସୁଧକଷାର ପ୍ରାଥମିକ ଧାରଣା ପାଇଁ ଆଲୋଚନା ଓ ମାନସାଙ୍କ ପ୍ରଶ୍ନର ସମାଧାନ ।

୪ରୁ ୭ । — ସୁଧକଷା ଲିଖିତାଙ୍କ ପ୍ରତି ପାଠରେ ୩ ନମ୍ବର ଓ ଶେଷ ଦୁଇ ପାଠରେ ୪ ନମ୍ବର ଲେଖାଏଁ ଆଲୋଚନା କରାଯିବ ।

୮ରୁ ୧୦ । — ସାଙ୍କେତିକ ଧାରାରେ ସୁଧକଷା ଲିଖିତାଙ୍କ ୧୦ ନମ୍ବର—ପ୍ରତି ପାଠରେ ୩ ନମ୍ବର ଶେଷ ପାଠରେ ୪ ନମ୍ବର ।

୧୧ରୁ ୧୮ । — ସୁଧକଷା ସମ୍ବନ୍ଧୀୟ ବିଶେଷ ଆଲୋଚନା ଅଧ୍ୟାୟର ମାନସାଙ୍କ ପ୍ରଶ୍ନ ଆଲୋଚନାକୁ ଗୋଟିଏ ପାଠ ଓ ଲିଖିତାଙ୍କକୁ ଦୁଇ ଦୁଇ ପାଠରେ ଶେଷ କରାଯିବ ।

## ନଭେମ୍ବର ୪ ସପ୍ତାହ ୨୪ ପାଠ

୧ରୁ ୩ । — ସୁଧକଷା ପୁନରାଲୋଚନା ।
( ଆବଶ୍ୟକ ହେଲେ ସ୍ୱତନ୍ତ୍ର ପ୍ରଶ୍ନ ପ୍ରସ୍ତୁତ ହେବ )

୪ରୁ ୮ ପାଠ — ଗୁଣନୀୟକ ଓ ଗୁଣିତକ 'କ' ସାଧାରଣ ଧାରଣା ଅଧ୍ୟାୟର ମାନସାଙ୍କ ଆଲୋଚନା ଓ ସୂତ୍ର ଗୁଡ଼ିକର ଧାରଣା ।

୯ରୁ ୨୨ । — ଗୁଣନୀୟକ ଓ ଗୁଣିତକ ଅଧ୍ୟାୟ 'ଖ'ର ଆଲୋଚନା ଓ ଲିଖିତାଙ୍କ ପ୍ରଶ୍ନ ସମାଧାନ । ( ୬୦, ୬୧, ୬୨ ଓ ୬୩ ପୃଷ୍ଠା )

୧୩ରୁ ୧୫ । ଗରିଷ୍ଠ ସାଧାରଣ ଗୁଣନୀୟକ ଅଧ୍ୟାୟ ଆଲୋଚନା ଓ ପ୍ରଶ୍ନର ଉତ୍ତର ସମାଧାନ ।
୧୬ରୁ ୧୮ । ଲଘିଷ୍ଠ ସାଧାରଣ ଗୁଣିତକର ଧାରଣା ଓ ପ୍ରଶ୍ନ ସମାଧାନ ।
୧୯ ଓ ୨୦ । ସାଧାରଣ ଭଗ୍ନାଂଶ ଅଧ୍ୟାୟ । (୭୦, ୭୧ ଓ ୭୨ )
୨୧ ଓ ୨୨ । (କ) ଭଗ୍ନାଂଶର ପ୍ରକାର ଅଧ୍ୟାୟ ।
୨୩ ଓ ୨୪ । ,, ,, ଲିଖିତାଙ୍କ ପ୍ରଶ୍ନ ସମାଧାନ ।

## ଡିସେମ୍ବର ୩ ସପ୍ତାହ ୧୮ ପାଠ

୧ରୁ ୩ । (ଖ) ସମଭଗ୍ନାଂଶର ଧାରଣା ଅଧ୍ୟାୟ ୭୮, ୭୯, ୮୦, ଓ ୮୧ ପୃଷ୍ଠା ।
୪ରୁ ୫ । (ଗ) ଭଗ୍ନାଂଶର ଆକାର ପରିବର୍ତ୍ତନ ଓ ଲଘିଷ୍ଠାକୃତି ।
୬ରୁ ୮ । (ଘ) ବିଭିନ୍ନ ଭଗ୍ନାଂଶର ତୁଳନା ଅଧ୍ୟାୟ ଆଲୋଚନା ଓ ଲିଖିତାଙ୍କ ପ୍ରଶ୍ନ ସମାଧାନ
୯ରୁ୧୧ । (ଙ) ଭଗ୍ନାଂଶର ଯୋଗ ବିୟୋଗ ଶିକ୍ଷା ( ମାନସାଙ୍କ )
୧୨ରୁ ୧୪ । ,, ,, ( ଲିଖିତାଙ୍କ ),
୧୫ରୁ୧୮ । (ଚ) ଭଗ୍ନାଂଶର ଗୁଣନ ହରଣ ଅଧ୍ୟାୟ ଆଲୋଚନା ଓ ମାନସାଙ୍କ ପ୍ରଶ୍ନ ସମାଧାନ ଗୁଣନର ।

## ଜାନୁଆରୀ ୪ ସପ୍ତାହ – ୨୪ ପାଠ

୧ । ଭଗ୍ନାଂଶ ହରଣ ଆଲୋଚନା ।
୨ । ,, ମାନସାଙ୍କ ଆଲୋଚନା ।
୩ରୁ ୫ । ,, ଲିଖିତାଙ୍କ ପ୍ରଶ୍ନ ସମାଧାନ ।
୬ରୁ ୮ । ଭଗ୍ନାଂଶର ଲଘୂକରଣ ।
୯ରୁ୧୩ । ,, ବିବିଧ ପ୍ରଶ୍ନ ସମାଧାନ ।

**ସୂଚନା:—** ଗଣିତ ଶିକ୍ଷା ପାଇଁ ସିଲାବସରେ ୧୦ଟି ପାଠ ନିର୍ଦ୍ଦିଷ୍ଟ ଅଛି । ଏ ମଧ୍ୟରୁ ୬ଟି ପାଠ ଉପରେ ସ୍କିମ୍ ବା ପାଠ୍ୟ ଖସଡ଼ା ପ୍ରସ୍ତୁତ ହେଉଅଛି । ଅନ୍ୟ ୪ ପାଠ ମାନସାଙ୍କ, ସଂଖ୍ୟା ଲିଖନ ଆଦିରେ ବ୍ୟବହୃତ ହେବାପାଇଁ ପାଠ୍ୟ ନିର୍ଘଣ୍ଟରେ ନିର୍ଦ୍ଦେଶ ଦିଆଯାଇଅଛି । ଏଣୁ ମାନସାଙ୍କ ପିରିଅଡ଼ରେ ଯେଉଁ ଧାରାର ଗଣିତ ଶିକ୍ଷା ଦେବାକୁ ଥିବ ସେହି ଧାରାର ମାନସାଙ୍କ ଆଲୋଚନା କରାଯିବ ।

୧୪ରୁ ୧୮ । (କ) ଦଶମିକ ଭଗ୍ନାଂଶର ପରିଚୟ ଅଧ୍ୟାୟ ଆଲୋଚନା ।
୧୯ରୁ ୨୪ । ପୁନରାଲୋଚନା ଓ ମାସ ପରୀକ୍ଷା ଗ୍ରହଣ ।

## ଫେବୃୟାରୀ ୪ ସପ୍ତାହ— ୨୪ ପାଠ

୧ ଓ ୨ । (ଖ) ମେଟ୍ରିକ ପ୍ରଣାଳୀ ସହିତ ଦଶମିକର ସମ୍ବନ୍ଧ ଅଧ୍ୟାୟ ଆଲୋଚନା ଓ ମାନସାଙ୍କ ପ୍ରଶ୍ନ ସମାଧାନ ୧୧୮, ୧୧୯, ୧୨୦ ପୃଷ୍ଠା ।
୩ ଓ ୪ । (ଗ) ଦଶମିକ ଭଗ୍ନାଂଶର ଯୋଗ ଓ ବିୟୋଗ ଅଧ୍ୟାୟ ଆଲୋଚନା ଓ ମାନସାଙ୍କ ପ୍ରଶ୍ନ ସମାଧାନ ।

